# ଗଳ୍ପ-ସମ୍ଭାର

ସମ୍ପାଦନା
ଡକ୍ଟର ଶ୍ରୀ କୃଷ୍ଣଚରଣ ବେହେରା
ଡକ୍ଟର ଶ୍ରୀ କ୍ଷେତ୍ରବାସୀ ନାୟକ

ବୁକ୍ସ ଏଣ୍ଡ ବୁକ୍ସ
ବିନୋଦ ବିହାରୀ, କଟକ-୨

ଗଳ୍ପ-ସମ୍ଭାର

ସମ୍ପାଦନା :

ଡକ୍ଟର କୃଷ୍ଣଚରଣ ବେହେରା
ଡ଼କ୍ଟର କ୍ଷେତ୍ରବାସୀ ନାୟକ

●

ପ୍ରଥମ ପ୍ରକାଶ :

ସେପ୍ଟେମ୍ବର, ୧୯୭୮

●

ପ୍ରକାଶକ :

ଶ୍ରୀ କୃଷ୍ଣଚନ୍ଦ୍ର ବେହେରା
ବୁକ୍ସ ଏଣ୍ଡ୍ ବୁକ୍ସ
ବିନୋଦ ବିହାରୀ, କଟକ-୨

●

ମୁଦ୍ରାକର :

ପ୍ରିଣ୍ଟ୍‌ୱେଲ୍,
କଲେଜ ଛକ, କଟକ-୩

●

ମୂଲ୍ୟ : ସାତ ଟଙ୍କା ମାତ୍ର

**GALPA–SAMBHAR**

*Edited by*

Dr. K C. Behera
Dr. K. B. Nayak

●

*Published by*

K. C. Behera
BOOKS & BOOKS
Binodbehari, Cuttack-2

●

*Printed by*

PRINT-WELL
College Square, Cuttack-3

●

Price—Rupees Seven only

# ସୂଚୀପତ୍ର

---

**ବିଷୟ ● ପୃଷ୍ଠାଙ୍କ ● ଲେଖକ**





# ସଂପାଦକୀୟ

ସାଂପ୍ରତିକ ସାହିତ୍ୟରେ ଗଳ୍ପ ହେଉଛି ଏକ ଆଦରଣୀୟ ରଚନା ଉନବିଂଶ ଶତାବ୍ଦୀରୁ ଅଦ୍ୟାବଧି ଏହାର ବିକାଶ ବିବିଧ କ୍ରମରେ ସାଧିତ ହୋଇଛି । ପାରଂପରିକ କାହାଣୀ-କଥନ ଓ ଶ୍ରବଣର ଶିଳାପଟ୍ଟରୁ ମଣିଷର ମନ ଅପସରି ନ ଯାଇ ନୂଆ ସ୍ୱାଦରେ କାହାଣୀର ରସ-ମାଦକତା ଭୋଗ କରିବା ପାଇଁ ଇଚ୍ଛା କରିଛି । ତେଣୁ ବୃହତ୍ କଥା, ପଞ୍ଚତନ୍ତ୍ର, ବେତାଳ ପଞ୍ଚବିଂଶତି, କଥାସରିତ୍ ସାଗର ଓ ଚତୁର ବିନୋଦ କଥା ପ୍ରଭୃତିର ରଚନା ଧାରାକୁ ଅନେକାଂଶରେ ବଦଳାଇ ଉନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରୁ ଆମ ସାହିତ୍ୟରେ ଗଳ୍ପଲେଖାର ସୂତ୍ରପାତ ହୋଇଛି । ଓଡ଼ିଆ ଗଳ୍ପ ସାହିତ୍ୟର ଜନକ ଫକୀରମୋହନ ସେନାପତିଙ୍କଠାରୁ ଆଜି ପର୍ଯ୍ୟନ୍ତ ବହୁ ଲେଖକ ସମୟ କ୍ରମେ ବିଭିନ୍ନ ସ୍ୱାଦର ଗଳ୍ପ ସୃଷ୍ଟି କରିଛନ୍ତି, ଆଙ୍ଗିକ ଓ ଆଭିମୁଖ୍ୟର କ୍ରମ ବିବର୍ତ୍ତନ ମଧ୍ୟ ସେମାନଙ୍କର ଗଳ୍ପାବଳୀରେ ପ୍ରତିଫଳିତ ହୋଇଛି ।

'ଗଳ୍ପ-ସମ୍ଭାର' ହେଉଛି ଓଡ଼ିଆ ଗଳ୍ପ ସାହିତ୍ୟର ଏକ ପ୍ରତିନିଧି-ସ୍ଥାନୀୟ ସଂକଳନ । ଏଥିରେ ଆଧୁନିକ ଗଳ୍ପ-ରଚନାର ଉନ୍ମେଷ କାଳରୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ ପ୍ରକାଶିତ ଗଳ୍ପ ଭିତରୁ ବଛା-ବଛା ଗଳ୍ପକୁ ସ୍ଥାନ ଦିଆ ଯାଇଛି । ବିଭିନ୍ନ କିସମର ଗଳ୍ପ ଏଥିରେ ସଂକଳିତ ହୋଇଛି । ଗଳ୍ପ-ରଚନାର ଆଙ୍ଗିକ ଓ ଉପଜୀବ୍ୟ ନେଇ ଗାଳ୍ପିକ ଗଣ ପରୀକ୍ଷା-ନିରୀକ୍ଷା ଚଳାଇ ଯେପରି ସଫଳ ହୋଇଛନ୍ତି—ତାହାର ନିଦର୍ଶନ ସ୍ୱରୂପ ଗୋଟିଏ ଗୋଟିଏ ଗଳ୍ପ ଏହି ସଂକଳନରେ ସଂଯୋଜିତ ହୋଇଛି । ବଛା ଯାଇଥିବା ଗଳ୍ପ ଗୁଡ଼ିକ ପ୍ରାୟ ଦେଶର ସାମାଜିକ ସମସ୍ୟା, ଇତିହାସ ଓ କିଂବଦନ୍ତୀ, ଦାମ୍ପତ୍ୟ ଜୀବନର ହାବ-ଭାବ, ମଣିଷର ମନସ୍ତତ୍ତ୍ୱ ଏବଂ ଜୀବ-ଜଗତର 'କାହାଣୀକୁ ନେଇ ଲେଖା ଯାଇଛି । ଲେଖକମାନେ ଗଳ୍ପଗୁଡ଼ିକୁ ଊଣା ଅଧିକେ ବର୍ଣ୍ଣନାତ୍ମକ ବା ସାଂକେତିକ କିଂବା ଆଖ୍ୟାନଧର୍ମୀ ଶୈଳୀରେ ପ୍ରକାଶ କରିଛନ୍ତି ।

ଗଳ୍ପଗୁଡ଼ିକର ଆତ୍ମସତ୍ତା ବିଶ୍ଳେଷଣ କଲେ ମନେ ହୁଏ, ଓଡ଼ିଆର ମନ ସତେ ଯେପରି ବିଶ୍ୱ-ବିବେକର ସ୍ୱାଦକୁ ଅଙ୍ଗୀକାର କରି ନେଇଛି । ବିଶ୍ୱର ଗଳ୍ପ-ସାହିତ୍ୟ ସହିତ ଓଡ଼ିଆ ଗଳ୍ପର ଯୋଗସୂତ୍ର ଏଇଠି ।

ଜାତିର ହିତୈଷୀ ପୁରୁଷଙ୍କ ପାଇଁ ରୁଚିକର ଗଳ୍ପ-ସଂକଳନଟିଏ ପ୍ରସ୍ତୁତ କରିବାର ଏହି ଉଦ୍ୟମକୁ ବରେଣ୍ୟ ଗଳ୍ପ-ସ୍ରଷ୍ଟାଗଣ ଉତ୍ସାହିତ କରିଥିବାରୁ ଏବଂ ଏହାର ପ୍ରକାଶନ ପାଇଁ ସମ୍ମତ ହୋଇଥିବାରୁ ଆମେ ସେମାନଙ୍କଠାରେ କୃତଜ୍ଞ ।



# ସୁନାବୋହୂ

**ଶ୍ରୀ ଫକୀରମୋହନ ସେନାପତି**

---

ରାମହରି ପଟ୍ଟନାୟକେ ଥିଲେ ପୋଲିସର ଦାରୋଗା । ବାଲେଶ୍ୱର ପ୍ରଗନା ଗୋପୀନାଥପୁର ଗାଁରେ ଜଣେ ଜଣାଶୁଣା ଲୋକ । ଭଲ ମନ୍ଦ କଥା ପଡ଼ିଲେ ଆଖପାଖ ଦଶ ଖଣ୍ଡ ଗାଁ ଲୋକ ପରାମର୍ଶ ଲୋଡ଼ିବାକୁ ତାଙ୍କ ପାଖକୁ ଧାଇଁଆସନ୍ତି । ସମ୍ମାନିତ ଲୋକେ ଚୁପ୍ ହୋଇ ବସିଥାନ୍ତି, ରାମହରିବାବୁ ଆସିବେ, ତେବେ କଥା ପଡ଼ିବ । ବାବୁ ପେନସନ୍ ପାଇ ପାଞ୍ଚବର୍ଷ ଯାଏ ଘରେ ବସିଥିଲେ । ତାଙ୍କ ବିୟୋଗ ବେଳକୁ ପୁତ୍ର ଶିବସୁନ୍ଦରର ବୟସ ଦଶ । କନ୍ୟା ଚମ୍ପା ଦେଈକୁ ପାଞ୍ଚବର୍ଷ ପଶିଥିଲା । ବିଧବା ବିମଳା ଦେଈ ବଡ଼ ଦୟାବତୀ, ବଡ଼ ହେଙ୍ଗୁଲୀ, ବଡ଼ ସରଳା ଥିଲେ । ଏତେ଼ ବଡ଼ ଦୁଃଖରେ ପଡ଼ି ବଡ଼ ଘରଣୀ ହୋଇ ପଡ଼ିଲେଣି । ପିଲା ଦୁଇଟି ଆଉ ଘରକରଣା ସମ୍ଭାଳି ସମ୍ଭାଳି ରଖିଥିଲେ । ରାମହରିବାବୁଙ୍କର ଦରମା ଉପୁରି ପୁପୁଳ ମିଶାଇ ବେଶ୍ ଦଶ ଟଙ୍କା ରୋଜଗାର ଥିଲା । ହେଲେ କଣ ହେଲା, ମଣିଷଟା ଥିଲେ ବଡ଼ ସାହା ଖର୍ଚ୍ଚୀ । ରୁଚ୍ଚା ହାତରେ ମରିଛନ୍ତି ।

⁝

---

ଗାଳ୍ପିକ: (୧୮୪୩-୧୯୧୮) ଆଧୁନିକ ଓଡ଼ିଆ ସାହିତ୍ୟରେ ଶ୍ରେଷ୍ଠ କଥାକାର ରୂପେ ପରିଗଣିତ । ଓଡ଼ିଆ ଭାଷା ଓ ସଂସ୍କୃତିର ସଂରକ୍ଷକ । ଊନବିଂଶ ଶତାବ୍ଦୀର ଓଡ଼ିଆ ଜୀବନ ଧାରା ଏବଂ ସାମାଜିକ ଘଟଣାବଳୀ ଆଧାରରେ ତାଙ୍କର ଗଳ୍ପନିଚୟ ପରିଗଠିତ । ବ୍ୟକ୍ତି-ଚରିତ୍ର ଓ ସମାଜ-ସ୍ତରରେ ଚାଲି ଆସୁଥିବା ମୂଲ୍ୟହୀନ କୁସଂସ୍କାର ବୋଧର ଅପସାରଣ ହେଉଛି ତାଙ୍କ ଗଳ୍ପ ଲେଖାର ଉଦ୍ଦେଶ୍ୟ । ତାଙ୍କ ଗଳ୍ପରେ ତୀର୍ଯ୍ୟକ ଅଭିବ୍ୟକ୍ତିର ନିପୁଣ ପ୍ରୟୋଗ ପରିଲକ୍ଷିତ ହୁଏ । ସମାଜ ପ୍ରେମୀ କଥାଶିଳ୍ପୀ ହିସାବରେ ସେ ଏକ ଅବିସ୍ମରଣୀୟ ପ୍ରତିଭା । ପ୍ରାୟ କୋଡ଼ିଏଟି ଗଳ୍ପ ଓ ଚାରୋଟି ଉପନ୍ୟାସ ଲେଖି ସେ ଜଣେ କ୍ଲାସିକ୍ କଥାଶିଳ୍ପୀ ରୂପେ ସମ୍ମାନିତ ।

ବିମଳା ଦେଈ କଷ୍ଟୁଲପା କରି ହାତରେ ଯେ ଦଶ ଟଙ୍କା ରଖିଥିଲେ, ଅଳ୍ପ ଦେହର ଗହଣାଗାଣ୍ଠି ଦି'ଖଣ୍ଡ ବିକାବିକି କରି ଆଜିଯାଏ ଘର ଚଳାଇନେଲେ । ଯାହା ଅଛି ଖରଚ ଟାଣିଟୁଣି କରି ପୁଅଟିର ପାଠପଢ଼ାରେ ସବୁ ଢାଳୁଛନ୍ତି । ସବୁବେଳେ ବୋଲୁଥାନ୍ତି, "ଶିବୁ ଦି' ଅକ୍ଷର ପଢ଼ୁ, ଦେହରେ ଗୁଣ ଥିଲେ କାଲି ସକାଳେ ଘରକରଣା କରି ବସିବ ଯେ !"

ଝିଅ ଚମ୍ପାଟି ଦେଖିବାକୁ ବେଶ୍ ଡୌଲଡ଼ାଉଲ । ନାକଟି ଖଣ୍ଡାଧାର ପରି ସିଧା, କଳା କଳା ବଡ଼ ବଡ଼ ଆଖି ଯୋଡ଼ିକ ଢଳ ଢଳ ଦିଶୁଥାଏ । ମୁଣ୍ଡର ଅଳକା ଆଉ ଦାନ୍ତଗୁଡ଼ିକ ସୁନ୍ଦର ମୁହଁଟିକୁ ସୁନ୍ଦର ମାନେ । କୁଙ୍କୁମ ବୋଳି ହେଲା ପରି ଦେହଟିର ରଙ୍ଗ । ଯେମିତି ରୂପ, ସେମିତି ଗୁଣ । ମା ପାଖରୁ ବେଶ ରନ୍ଧାବଢ଼ା ଶିଖିଛି । ଆଉ ଆଉ ଗୁଣରେ ତାକୁ କେହି ବାଉ ପାରିବ ନାହିଁ । ଶିବୁ ଭାଇ ଚେଷ୍ଟା କରି କିଛି ପାଠ ପଢ଼ାଇ ଦେଇଛନ୍ତି । ହାତରେ କାମ ପାଇଟି ନଥିଲେ ସନ୍ଧ୍ୟାବେଳେ ମା ପାଖରେ ବସି 'କୃପାସିନ୍ଧୁ ବଦନ' ଆଉ ଛାନ୍ଦମାଳାରୁ କେତେ ଗୀତ ବୋଲେ ।

ଶିବୁବାବୁ କଚେରୀରେ କିରାଣୀଗିରି କାମ କରନ୍ତି । ଚାକିରି ଖଣ୍ଡିକ ପାଇଲା ଦିନରୁ ତାଙ୍କର ଇଚ୍ଛା—ଅଳ୍ପସ୍ୱଳ୍ପ ଦରମା ଦେଇ ପିଲା ଭଲିଆ ଗୋଟିଏ ଟେପେଣ୍ଡ୍ରା ରଖିଲେ ମାଆ ଟିକିଏ ଆରାମରେ ରହିବେ । ବିମଳା ଦେଈ ଶୁଣି ନାହିଁ ନାସ୍ତି । ଗୃହଳ ଅଧସ୍ପରେ ଫୁଟାଇଦେଲେ ପାଇଟି ଛୁଡ଼ିଲା । ପିଲାଟା କେତେ ଦରମା ପାଏ ଯେ ଦଶ'ଟାଏ ବଢ଼ାଇ ବସିବ ?

ଦିନ ପାଣି ପରି ବହି ଯାଉଛି । ଆସନ୍ତା ବର୍ଷ ଛ'ଦିନକୁ ଚମ୍ପାର ବାର ପୂରି ଯାଇ ତେର ବର୍ଷ ପଶିବ । ତେଣିକି ଚଉଦ । ଯୋଡ଼ା ବୟସ ପଶିଲେ ବାହା ମନା । ଏହି ବର୍ଷ ବିଭା ନ ହେଲେ ନୁହେଁ । କରଣଘର ବୋଲି ଝିଅଟାକୁ ଥୁବୁଡ଼ୀ କରି ଘରେ ରଖିବା ନିହାତି ଲୋକହସିଆ କଥା । ଘର ଭଲ, କନ୍ୟାଟି ସୁଲକ୍ଷଣୀ, ଭଲ ଭଲ ଜବାବ ଆସିଲାଣି । ବିମଳାଦେଈଙ୍କର ତୁରନ୍ତ ଜବାବ ନା, ଯେ ଯେତେ ବୁଝାଉ, ଏକା ସ—ନା ।

ଦିନେ ସନ୍ଧ୍ୟାବେଳେ ବିମଳା ଦେଈ, ଅନ୍ନ ପିଉସୀ ଆଉ ଶିବୁ ବାବୁଙ୍କୁ ପାଖରେ ବସାଇ ଆପଣା ମନ କଥା ଫିଟାଇ କହିଲେ, "ଦେଖ ପିଉସୀ, ଝିଅକୁ କୁଆଁରେ ନେଲେ ଗଲା, ଯମ ନେଲେ ମଲା ।" ବଡ଼ ଲୋକ ଦେଖି ଦୂରଦୂରାନ୍ତରକୁ ଝିଅଟାକୁ ପେଲି ଦେବି, ଆଉ ତ ଆଖିପୂରାଇ ଦେଖିପାରିବି ନାହିଁ । କାରଣ କୁଳ

ଯେ ଗଲା, ଏକମୁହାଁ ସେହି ଗଲା । ମୋର ଧାରଣା ଅଛି, ଗୋଟିଏ ଗଲେ କଣ ହୋଇ ମରିଯିବ ଯେ ! ଇମିତ ଆଖ ପାଖରେ ଦେବା ମେ ଯିମିତ ଡ଼ାକଦେଲେ 'ଓ' କରୁଥିବ । ଏ ତ ଗଲା ଗୋଟାଏ ବାଡ଼ । ଅସଲ କଥା, ମୁଁ ସତ୍ୟ ଲଙ୍ଘିବ ନାହିଁ ! ବାବୁମାନେ, ଆଉ ବଉଳ ଚାଲିଯାଇ ସ୍ୱର୍ଗରେ ଅଛନ୍ତି, ମୁଁ ନରକରେ ଘାଣ୍ଟି ହେଉଛୁ । ସତ୍ୟ ଲଙ୍ଘିଲେ ମୋତେ ନରକରେ ବି ଠାବ ହେବ ନାହିଁ ।"

ରାମହରିବାବୁଙ୍କ ଶ୍ୱଶୁର ଛତ୍ରା ପଟ୍ଟାଣୀ ନବଘନ ଦାସ ପୋଲିସର ଜମାଦାର ଥିଲେ । ଗୋଟିଏ ଥାନାରେ ଏକ ସଙ୍ଗରେ ଚାକିରିରେ ଢେର ଦିନ ବିତି ଯାଇଥିଲା । ନବଘନବାବୁଙ୍କ କୁଟୁମ୍ବ ମଧ୍ୟରେ ଭାର୍ଯ୍ୟା କମଳା ଦେଈ, ଅଉ ଗୋଟିଏ ପୁଅ ଦିବାକର । ଦୁଇ ବାବୁଙ୍କ ମଧ୍ୟରେ ଯିମିତ ମନ ମିଳେ, ଖୁବ୍ ଭାବ । ଏଣେ ଘରଆଡ଼େ ବିମଳା ଦେଈ ଆଉ କମଳା ଦେଈଙ୍କ ମଧ୍ୟ ସିମିତ ମିଳାପ, ସିମିତ ଏକ ମନ । ଦୁଇଜଣ ଯେତେବେଳେ ଭୂଆସୁଣୀ ଥିଲେ, ରୋଜ ସକାଳେ ବାଡ଼ିଆଡ଼େ ପୋଖରୀ ତୂଠରେ ଘଡ଼ିଏ ଯାଏ ବସି ଦାନ୍ତ ଘଷନ୍ତି, ଆଉ ଦୁଃଖସୁଖ କଥା, ହସ ଖୁସି କଥା, ଘରକରଣା କଥା ହୁଅନ୍ତି । ଦୋଳପୂର୍ଣ୍ଣିମା ଦିନ ଦୁଇଜଣ ଆମ୍ବ ବଉଳ ବସିଲେ । ଚମ୍ପା ଯେତେବେଳେ ପେଟରେ ଥାଏ, କମଳା ଦେଈ କହିଲେ, "ବଉଳ, ତମର ଯେବେ ଗୋଟିଏ ଝିଅ ହେବ, ମୋ ଦିବାକୁ ଦେବ ।" ବିମଳା ଦେଈ କହିଲେ, "ହଁ ବଉଳ ଦେବ ।" କମଳା ଦେଈ 'ସତ୍ୟ ?' ବିମଳା 'ସତ୍ୟ ।' କମଳା, 'ସତ୍ୟ ?' ବିମଳା, 'ସତ୍ୟ' । କମଳା, 'ସତ୍ୟ ? ବିମଳା, 'ସତ୍ୟ ।' ତିନି ସତ୍ୟ ଉପରେ ଆଉ କଣ କଥା ଥାଏ ? ନବଘନ ବାବୁ, କମଳା ଦେଈ ଚାଲିଯାଇଛନ୍ତି । ପୁଅ ଦିବାକର ଘରକୁ ଏକୁଟିଆ । ପିଲାଟା ଯୋଗ୍ୟ, ଇଂରାଜୀ ବି ଦି ଅକ୍ଷର ଜାଣେ । ଯୁବା ବୟସ । ଦେଖିବାକୁ ସୁନ୍ଦର । କାକଟପୁର ଜମିଦାର ସିରସ୍ତାର ନାଏବ । ବିମଳା ଦେଈ ସେ ସତ୍ୟକୁ ହୃଦୟରେ ଲେଖି ରଖିଛନ୍ତି । କହିଲେ, "ମୁଁ ସତ୍ୟ ଲଙ୍ଘିବି ନାହିଁ, ଛେଉଣ୍ଡ ପିଲାଟିକି ଥଏ କରିବ ।" ବିଭା ହୋଇଗଲା । ଦିବାକର, ଚମ୍ପା ମାଣିକଯୋଡ଼ା ପରି ପରମ ସୁଖରେ ଘରେ ଥାନ୍ତି । ଦୁଇଜଣଙ୍କର ଏକ ମନ, ଏକ କଥା, ଏକ ଇଚ୍ଛା । ପୃଥିବୀରେ ସ୍ୱର୍ଗୀୟ ସୁଖ ଯଦି କିଛି ଥାଏ, ସେଇଟା ହେଲା ଦାମ୍ପତ୍ୟ ପ୍ରେମ ।

ମା ବିମଳା ଦେଈ ଏଣିକି ଅଡ଼ି ବସିଲେଣି, ଘରକୁ ବୋହୂଟିଏ ଆଣିବାକୁ ହେବ । ଦିନେ ରବିବାର କଚେରି ବନ୍ଦ, ପୁଅ ଘରେ ଅଛି । ଶିବୁ ବାବୁ ବସି ଖଣ୍ଡିଏ ପୋଥି ପଢ଼ୁଥିଲେ । ବୁଢ଼ୀ ଧୀରେ ଧୀରେ ଯାଇ ପାଖରେ

ବସିଲେ । କଅଁଳେଇ କଅଁଳେଇ କହିଲେ, "ଆରେ ବାପା ଶିବୁ ! ଅଣକ ପାଞ୍ଚ ବରଷ ହେଲା ତୋ ପାଇଁରେ ଲାଗିଛି; କେତେଥର କହିଲି, ଶୁଣିଲୁ ନାହିଁ । ପଢ଼ିଲୁ ପଢ଼ିଲୁ କହିଲୁ, ପାଠ ପଢ଼ସାରିଲେ ବାହା ହେବୁ । ପଢ଼ା ସରିଲା । ଫେର୍ ଧରିଲୁ, ଚାକିରି କଲେ ବାହାଘର ହେବ । ଚାକିରି ବି ହେଲୁ । କାହିଁ ବାହାଘର ନା-ଚର୍ଚ୍ଚା ବି ନାହିଁ । ମୋର କଣ ଆଉ ବଳ-ବୟସ ଅଛିରେ ? ମୁଁ କଣ ଆଉ କାମ ପାଇଟିକି ପାରିବିରେ ? ବଡ଼ା ମା ସିନା ବାହାର ଘରକାମ ପାଇଟି କରି ଦେଇଗଲା; ଭିତର ପାଇଟି ରନ୍ଧାବଢ଼ା କରୁଛି କିଏ ? ଏଣିକି ସଞ୍ଜ ହେଲା ତ ଆଖିକି କିଛି ଦିଶିବ ନାହିଁ । ପାଞ୍ଚ ଜାଗା ହାବୁଡ଼ି ପଡ଼ିବି, କାମ ପାଇଟି ହାତକୁ ଲାଗିବ ନାହିଁ । ଦିନେ ଦିନେ ଦିହପା'କୁ ଲାଗିଲେ ଚମ୍ପା ଆସି ଦିଟା ସିଝାସିଝି କରି ଦେଇଯାଏ । ସେ କଣ ସବୁଦିନେ ଆସୁଥିବ ? ଯେତେ ହେଲେ ସେ ହେଲା ପରଘର, ତାର ଫେର୍ ଘରକରଣା ଅଛି ନା ? ପୁଣି ଘରକୁ ଏକୁଟିଆ । ଶାଶୁ ନଣନ୍ଦ କେହି ନାହିଁ ବୋଲି ସିନା ଯେତେବେଳେ ପାରେ ଧାଇଁ ଆସେ, ନୋହିଲେ କଣ ଆସିପାରନ୍ତା ? ଆଉ ଦେଖ, ଦିନ ପ୍ରସ୍ତ ଘର । ମୁଁ ଗୋଟାଏ କଣରେ କେଉଁଠି ପଡ଼ି ରହିଥାଏଁ, ତୁ କଚେରୀକୁ ବାହାରିଗଲେ ଘରମୁଡ଼ାକ କମିଠକା ଖାଁ ଖାଁ ଗୋଡ଼ାଏ । ଏହି ଘର କ'ଣ ଥିଲା, କ'ଣ ହେଲା ! ହାଇରେ—ହା । ମୁଁ ଆଉ କେତେକାଳ ବଞ୍ଚି ରହିବିରେ ! ମତେ ଟିକିଏ ଅନାରେ ଭଲା ! ଯେ ନାହାନ୍ତି ବୋଲି ସିନା, ତୁ କଣ ଆଜିଯାଏ ଅଭିଆଡ଼ା ବସିଥାନ୍ତୁ ?" ବୁଢ଼ୀ ଆଉ କିଛି କହିପାରିଲେ ନାହିଁ । ଧକେଇ ଧକେଇ କାନ୍ଦି ବସିଲେ; ପୁଁ ପୁଁ କରି ନାକ ପୋଛି ପକାଉଥାନ୍ତି ।

ମା'ଙ୍କ ଦୁଃଖ ଦେଖି ଶିବବାବୁଙ୍କ ମନରେ ଭାରି ଦୁଃଖ ହେଲା । ପୋଥି-ଖଣ୍ଡିକ ମେଜ ଉପରେ ଥୋଇଦେଇ ଅନୀ ଆଈ ଦୁଆରକୁ ଚାଲିଗଲେ । ଅନୀ ଆଈ ଲେଖାଯୋଖାରେ ବିମଳାଦେଈଙ୍କ ପିଉସୀ । ଶିବୁ ଆଉ ଚମ୍ପାକୁ କୋଳରେ କାଖରେ କରି ବଢ଼ାଇଛି । ବିମଳା ଦେଈ ତାକୁ ମା ପରି ମାନନ୍ତି । ଅନୀ ବି ବିମଳା ଦେଈଙ୍କୁ ଝିଅ ପରି ମଣେ, ଭଲ ପାଏ । ସବୁ କଥାରେ ସାହା ହୁଏ । ଅନୀ ଘର ଆଉ ବିମଳାଦେଈଙ୍କର ପାଚେରି ଲଗାଲଗି, ଦୁଆର ଅଲଗା ଅଲଗା । ଅନୀ ଆଈ ବଂଶଲତା ଆମ୍ଭେମାନେ ପାଇ ନାହୁଁ । ଏଥିକୁ ଉପର ପୁରୁଷର କାହାର ପରିଚୟ ଦେବାକୁ ଅକ୍ଷମ । ବିଭା-ପ୍ରସଙ୍ଗରେ ଆଈ ନାତି ମଧ୍ୟରେ ଢେର କଥାବାର୍ତ୍ତା ହେଲା । ଆଈ କହିଲେ, ଆଚ୍ଛା ଶିବୁ, ତତେ ଗୋଟିଏ ଭଲ ସୁନ୍ଦରୀ ବୋହୂ ଆଣିଦେବି, ମାଣିଆବନ୍ଧ ଲୁଗା ଟିଏ ପିନ୍ଧାଇବୁ ଏକା !"

ବୟସ ଥିଲାବେଳେ ଅମା ଆଉ ବଡ଼ କଳାହୁଡ଼ି ଥିଲା । ପର ଉପକାର କରିବାକୁ, ଭାବ କରିବାକୁ ବି ଆଗ । ବୁଦ୍ଧିମନ୍ତ, ଦରକାର ପଡ଼ିଲେ ଗୋଟିଏ ଠିକ୍ ବୁଦ୍ଧି ବାଢ଼ି ଦେବାକୁ ବି ଖୁବ୍ ପାରେ । ଗାଁ ମାଇକିନିଆଟିଏ ହେଲେ କଣ ହେଲା, ଭଲମନ୍ଦ କାମରେ ଗାଁ ଲୋକେ ତାଙ୍କ ପରାମର୍ଶ ପଚାରନ୍ତି । ଏବେ ତ ଆଉ ବରବୁଢ଼ୀ ହୋଇଗଲାଣି । ବାଡ଼ି ଖଣ୍ଡିଏ ଧରି ଠୁକୁର ଠୁକୁର କରି ବାହାରିଲା । ଦାଣ୍ଡ ଦୁଆରୁ "ରେ ବିମଳା ! ରେ ମା ବିମଳା !" ଡାକି ଡାକି ଯାଇ ଝିଅଟି ପାଖରେ ବସିଲା । ଏ କଥା ସେ କଥା, ଦୁଇଟା କଥା ବାଦେ କହିଲା, "ଆରେ ମା ' ଶିବୁ କହୁଛି, ବାହାହେବ । ହଁ, ଭଲଲୋକ ଘର ଝିଅଟିଏ ହୋଇଥିବ; ଦି ଅକ୍ଷର ପଢ଼ିଥିବ, ଏମିତିକା କନ୍ୟାଟିଏ ପାଇଲେ ବାହା ହେବ ।" ଶିବୁବାବୁଙ୍କର ଆଉ ଗୋଟିଏ କଥା କନ୍ୟାଟି ସୁନ୍ଦରୀ ହୋଇଥିବ, ଆଉ କିନ୍ତୁ ଏ କଥାଟା ଝିଅଟିକୁ କହିଲେ ନାହିଁ । ଏକା ଶିବୁବାବୁ କିଏ ସୁନ୍ଦରୀ କନ୍ୟା ବାଛି ହେବାକୁ କାହାର ଇଚ୍ଛା ନ ହେଲେ ? ପାଠକ ପାଠିକା ବୋଲନ୍ତୁ ଭଲା, କଥାଟା କଣ ମିଛ ? ବିମଳା ହେଉ ଆନନ୍ଦରେ ପିଉସୀକୁ କୁଣ୍ଢେଇ ପକାଇ କହିଲେ, "ପିଉସୀ, ତୁ ଟିକିଏ ଲାଗିଯା, ମୋର ଆଉ କିଏ ଅଛି ? ବାପତେଣ୍ଡିଟି ଲାଗି କିଏ ଧାଇଁବ ? ଯାହା କରିବେ ଜୁଆଇଁ ବାବୁ । ମୁଁ ତ କହିବି ନାହିଁ, ତୁ ଯା ତାଙ୍କୁ କହିବୁ । ସେ ଖୋଜାଲୋଡ଼ା କରି ଘଟଣା କରି ଦିଅନ୍ତୁ । ଚମ୍ପାକୁ କହିବି, ସେ ବି ଜୁଆଇଁବାବୁଙ୍କୁ କହିବ । ଯେତେହେଲେ ସେଇଟା ହେଲା ପିଲାଲୋକ । କହି ଜାଣିବ ନାହିଁ । ତୁ ଯା ତାଙ୍କୁ ବୁଝେଇ ବନେଇ-ବାନେଇ କହିବୁ ।"

ଦିବୁ ବାବୁ ବର୍ତ୍ତମାନ ମହା ହଇରାଣରେ ପଡ଼ିଲେଣି । ଉଠୁଣୁ ବସୁଣୁ ଚମ୍ପା ତାଙ୍କ ପାଖରେ ଲାଗିଛି, "ମୋ ଭାଇ ପାଇଁ ଗୋଟିଏ କନ୍ୟା ଠିକଣା କରିଦିଅ ।" ଦିବୁ ବାବୁ ବାହାରୁ କୁଆଡ଼ୁ ବୁଲିଆସି ଘରେ ଗୋଡ ଦେଇଥିବେ କି ନାହିଁ, ଚମ୍ପା ଧାଇଁଆସି ପଚାରିବ "କଣ, କନ୍ୟା ଠିକଣା ହେଲା ?" ମଲା ଯା ! କନ୍ୟାଟାଏ କଣ ପଡ଼ିଆରେ ପଡ଼ିଛି ଯେ ଧାଇଁ-ଯାଇଁ ଗୋଟାଇ ଆଣିଲେ ହେଲା ? ଚମ୍ପାଟା ଯୋକପରି ଲାଗି ରହିଛି ।

ଦିବୁ ବାବୁ ଜମିଦାର ନାଏବ । ମଫସଲର ଖବର ଜଣା । ପାଞ୍ଚ ଜାଗାକୁ ଖବର ପଠାଇଲେ । ଦୁଇ ପକ୍ଷକୁ ଲୋକ ଯା-ଆସ କଲେ । କଥା ପଟିଲା ନାହିଁ, ଭାଙ୍ଗିଗଲା । ଶେଷରେ ପ୍ରସଙ୍ଗ ଚଳିଲା । ଦୁମଦୁମପୁରରେ କନ୍ୟାଟି ଘରଯୋଗା ହେଲାଣି । ବୟସ ସତର ବରଷ ଚାଲିଛି । ବୁଧବାର ଝିଅ । ବଡ଼ଭାଇ ବଳରାମ ଦାସେ ଗାଁର ଅବଧାନ ।

ସବୁ ପ୍ରସଙ୍ଗ ଶୁଣି ଶିବୁ ବାବୁ ଟିକଏ ମୋଡ଼ମାଡ଼ ହେଉଥିଲେ । କନ୍ୟାଟି ବଡ଼ଲୋକର ଝିଅ ଆଉ ସୁନ୍ଦରୀ ହୋଇଥିବ, ଏଇଟା କିଏ ନ ଲୋଡ଼େ ? ହେଲେ ଯେଇଟା କଣ ସମସ୍ତଙ୍କ କପାଳକୁ ଘଟିଥାଏ ? ବିଭା କଥାଟି ଜାଣି ପ୍ରଜାପତି ଘଟସୂତ୍ର କଥା । ତାଙ୍କ ନିର୍ବନ୍ଧକୁ କିଏ ମେଣ୍ଟିବ ? କନ୍ୟା ଯା ଈଶାଣରେ ଟୁହଲା ଦେଇଛି, ଧରି ବାନ୍ଧି ସେଇଠିକି ଯିବ । ଶିବୁ ବାବୁ ଅଖିଫେରାଇ ଦେଖିଲେ, ଆଉ କେଉଁଠି ଠିକଣା ନାହିଁ । ଏଣେ ମା ହେଲେଣି ଅଥୟ । କଣ କରିବେ ? ରାଜି ହୋଇଗଲେ । ବିମଳା ଦେଈଙ୍କ ଆନନ୍ଦ ଦେଖେ କିଏ ? ଭୋକିଲା ଲୋକକୁ ପେଜ ମନ୍ଦାକ କି ଅମୃତ ! ବୋହୂ ବୋହୂ ଭଜି ହେଉଥିଲେ । ବୋହୂ ଠିକଣା ହେଲା, ଆଉ କଣ ? ଚମ୍ପା ମନରେ କଲା, ପାଗଲୀ ବୋହୂ ଆସିବ, ଏକାବେଳକେ ହାଣ୍ଡିଶାଳରେ ପଶିଯିବ, ମା ଝଲାପ ପାଇଲେ ଭଲ ହେଲା ।

ଧବୁ ବାବୁ ଖବର ଆଣିଲେ, କନ୍ୟା ଦେହ ବର୍ଣ୍ଣ ଟିକିଏ କଳା, ନାମ— ନମା । ନାମଟା ବିଚକଟିଆ କିଆଁ, ସେଥିରେ ମଧ୍ୟ ଖବର ଆସିଲା । କନ୍ୟାର ଉପର ଦୁଇ ଭାଇ ଲାଗ ଲାଗ 'ବାହୁଡ଼ିଲା ବାଦେ କନ୍ୟାଟି ଜନ୍ମ ହେଲା । ମା ଦେଖିଲେ, କନ୍ୟାଟି ବଡ଼ ସୁନ୍ଦର । ଚମକି ପଡ଼ିଲେ । ଉପର ଦିଓଟି ସୁନ୍ଦର ପୁଅଙ୍କୁ ଯମ ନେଇଯାଇଛି, ଏ କନ୍ୟାଟି କାଳେ ଘେନିଯିବ, ନାମ ଦେଲେ ନମା, ଅର୍ଥାତ୍ ନମ ପର ପିତା, ଯମକୁ ରୁଚିବ ନାହିଁ ।

ସେ ସବୁ କଥା ଥାଉ । ନମ ସାଙ୍ଗରେ ଶିବୁର ବିଭା ହୋଇଗଲା । ବଡ଼ ପ୍ରେମରେ, ବଡ଼ ଆନନ୍ଦରେ ଶାଶୂ ବୋହୂଟିକୁ ଘରକୁ ନେଲେ ।

ନୂଆବୋହୂଟି ଘରେ ପଶିଛି, ତାକୁ ହଠାତ୍ କମିତ କିଏ କହିବ, ତୁ ଏ କାମ କର, ସେ କାମ କର । ବୋହୂଟି ଢାଙ୍କି ଢୁଙ୍କି ହୋଇ ଘରେ ପଶିଥାଏ । ଚମ୍ପା ଆପଣା ଘର ବାସିପାଇଟି ସାରି ଆସି ବୋହୂକୁ ଉଠାଏ । ସାଙ୍ଗରେ ଘେନିଯାଇ ଗାଧୁଆ ପାଧୁଆ କରାଇ ଆଣେ । ବିମଳା ଦେଈ ରନ୍ଧାବଢ଼ା କରି ଭାତ ପରଷି ଦିଅନ୍ତି, ବୋହୂ ଖାଇ ହାତ ଧୋଇ ଶୋଇପଡ଼େ । ବଢ଼ା ମା ଆସି ସଙ୍ଗୁଡ଼ି ବାସନ ଧୋଇପକାଏ ।

ଯେନ୍ଦର ଦିନ ଗଲା, ମାସେ ଗଲା, ଦି ମାସ ବି ଗଲାଣି । କାହିଁ ? ବୋହୂ ତ ଗମ୍ଭୀରୁ ବାହାରୁ ନାହିଁ ? କାମପାଇଟି କିଛି କରୁ ନାହିଁ ? ଚମ୍ପା ଦି ଥର, ତିନି ଥର କହିଲାଣି, "ବୋହୂ, ଉଠ, କାମ ପାଇଟିରେ ଲାଗ,

ରନ୍ଧାବଢ଼ା କର ! ଗୁଛାଟା ବନ୍ଧଣରେ ପଡ଼ିଛ କ'ଣ ? ବୋହୂ ପାଲେଇ ହଏ, ଶୁଣି ନ ଶୁଣିଲା ପରି କିଛି କଥା କହେ ନାହିଁ । ମନରେ ଭାବେ, "ହଉ ! ମା କହିଛି—ମୋ ଗେରସ୍ତ ରୋଜଗାରିଆ, ମୁଁ ଏ ଘରେ ସାଆନ୍ତାଣୀ । ଏଗୁଡ଼ାକ ମୋ ଘରେ ଖାଇବେ, କାମ ଧାନ୍ଦି କରିବେ ସିନା ! ମୁଁ କାହିଁ ଗତର ଖଟାଇବି ?" ମା ଯେଉଁକି ଉପଦେଶ ଦେଇଥିଲା, ବୋହୂ ଭଲକରି ମନରେ ରଖିଛି । ମା କହିଛି, ଶାଶୁକୁ ଅନାଇ କଥା କହିବୁ ନାହିଁ, ଠାର ଠାରି ଦେବୁ । ବୋହୂ ଖାଇ ବସିଥାଏ । ଭାତ ତିଅଣ ଲୋଡ଼ା ହେଲେ କଂସା କି ଗିନାଟା ମାଟିରେ ଠକ୍ ଠକ୍ ମାରି ଠାରିଦିଏ । ବୋହୂଟି ଟିକିଏ ଭୋକକାଉଳା, ଭାତ ରନ୍ଧାରେ ଶାଶୁ ଟିକିଏ ଡେରି କଲେ ବୋହୂ ରୋଷେଇ ଘରକୁ ଯାଇ ହୁଁ ହୁଁ କରି ପେଟରେ ହାତ ବୁଲାଇ ଠାରିଦିଏ । କମଳା ଦେଈ ବି ବୁଝି ପାରନ୍ତି ବୋହୂଟିକୁ ଭୋକ ଲାଗିଲାଣି ।

ଚମ୍ପା ଆଉ ସହିପାରିଲା ନାହିଁ । ବୋହୂକୁ ବକାବକି କଲାଣି । ବୋହୂବି କେତେ ସହିବ ? କାହିଁ ସହିବ ? ସେ ଯେ ଘରର ସାଆନ୍ତାଣୀ ! ପହିଲୁ ପହିଲୁ ରାଗରେ ମୁହଁଶାଉଁ ହେଉଥିଲା, ଏଣିକି ସାଫ ଜବାବ ଦେଲାଣି । ଦିନେ ଚମ୍ପା ଭାରି ରାଗିଯାଇ ବୋହୂକୁ ଗାଳିଦେଲା । ବୋହୂ ବି ଗାଳି ଆରମ୍ଭ କଲା । କମଳା ଦେଈ ଧାଇଁଆସି କହିଲେ "ନା ରେ ମା ଚମ୍ପା ! ଛୁଆଟା ମା'କୁ ଛାଡ଼ି ଆସି ମନ ଦୁଃଖରେ ଅଛି. ସବୁ କାମଧାନ୍ଦି ପଛେ କରିବ ଯେ ! ଢୋଲ କାନ୍ଧରେ ପଡ଼ିଲେ ଆପେ ବଜାଇବ ।" ଚମ୍ପା କହିଲା, "ନାହିଁ ମା ! ଏ ବୋହୂ ଦେଖୁଛି ଢୋଲ ତ ଢୋଲ, ଢେଙ୍କି କାନ୍ଧରେ ପଡ଼ିଲେ ବି ହଲଚଲ ହେବାର ନୁହେଁ ।"

ଦିନେ 'ଅମା ଆଈ ନାତୁଣୀକୁ ପଚାରିଲେ, "କି ଲୋ ଚମ୍ପା, ତୁ ତ ବୋହୂକୁ ଏତେ ବୁଝାଉଛୁ, ଏଣିକି ଉଠି କାମ-ଧାନ୍ଦି କଲାଣି ନା ?"

ଚମ୍ପା କହିଲା, "ନାହିଁ ଲୋ ଆଈ, ତୁ ଯେତେ ମାଠିରୁ ମାଠ, ସେ ତ ସେଇ ଦରପୋଡ଼ା କାଠ !"

ରନ୍ଧାବଢ଼ାରେ ଟିକିଏ ଉନ୍ନତ ହେଲେ ବା ଆଉ କିଛି କଥାରେ ବୋହୂଟା ଶାଶୁ ସଙ୍ଗରେ ଭଟ୍ ଭଟ୍ ଲଗାଇଲାଣି । ହେଲେ ବୋହୂଟା ମା-କଥା ଭୁଲି ନାହିଁ । ଶାଶୁ ମୁହଁକୁ ଚାହିଁ ଗାଳି ଦିଏ ନାହିଁ, ଓଢ଼ଣା ପଡ଼ିଥାଏ, ପଛ କରି ବରବର କରି ବକିଯାଏ ।

ବୋହୂର ଯେ ଏତେ ଗୁଣ, ଶିବୁବାବୁ ସବୁ ଜାଣନ୍ତି ନାହିଁ । ମା'ତ କିଛି କହିବେ ନାହିଁ, ଚମ୍ପା ବି କିଛି କହେ ନାହିଁ । ହେଲେ, ଘର କଥା ତାକୁ କିଛି ବୁଝିପାରିବେ ନାହିଁ ? ସବୁ ନ ଶୁଣନ୍ତୁ, କେତେ କେତେ କଥା ବୁଝିଲେଣି, ଏଣିକି ଚମ୍ପାକୁ ବଳେଇଲଣି । ଭାଇଙ୍କୁ ସବୁ କଥା ନ କହିଲେ ନୁହେଁ । ଘରେ ଯେବେ କହେ, ମା ଧାଇଁଆସି ପାଟି ବନ୍ଦ କରାଇବ, ସେ କଥା କୁହାଇ ଦେବ ନାହିଁ ।

ଦିନେ ସଞ୍ଜବେଳେ ଅମା ଆଈ ଦୁଆରେ ନାତି ନାତୁଣୀ ଆଈ ତିନିହେଁ ବସି ଢେର ବେଳଯାଏ କଣ ପରାମର୍ଶ କଲେ; ଅର୍ଥାତ୍ ସାଧୁଭାଷାରେ ଲେଖାଯିବ, କମିଟି ବସିଲା । ଏତେ ଗୁପ୍ତ ଗୁପ୍ତ କଥା ହେଲେ ଯେ, କେହି କିଛି ଜାଣି ପାରିଲେ ନାହିଁ । ଶେଷରେ ଶିବୁବାବୁ କହିଲେ, ଅର୍ଥାତ୍ ରିଜଲ୍ୟୁସନ୍ ପାସ୍ ହେଲା—"ଦେଖ ଚମ୍ପା ! ଆସନ୍ତା ଶୁକ୍ରବାର କଚିରୁ ସୋମବାର ଯାଏ ଗୁଡ୍ ଫ୍ରାଇଡେ, ତିନି ଦିନ କଚେରି ବନ୍ଦ ହେବ, ସେହି ସମୟରେ ସବୁ କଥା ଠିକ୍ ଠିକଣା କରିବା ।"

ଆଜି ଶୁକ୍ରବାର ! ଜୁଆଇଁ ଦିବୁବାବୁ ସକାଳୁ ଉଠି କାକଟପୁର ଜମିଦାର ଘରକୁ ଗଲେଣି, ଦୁଇଦିନ ଆସିବେ ନାହିଁ । ଚମ୍ପା ଦୁଆରେ କଣ୍ଟି ଲଗାଇ ଦେଇ ମା ଘରକୁ ଅଇଲା । ଭାଇ ପିଣ୍ଡାରେ ବସିଥିଲେ । ଚମ୍ପାକୁ ଦେଖି ଟିକିଏ ହସି ଦେଇ ଦାଣ୍ଡପଟକୁ ଚାଲିଗଲେ । ଚମ୍ପା ଏକାବେଳକେ ବୋହୂ ବଢ଼ଣା ପାଖକୁ ଚାଲିଗଲା । ବୋହୂର ନିଦ ଭାଙ୍ଗିଗଲାଣି । ଗୁଚ୍ଛାଟାରେ ବଢ଼ଣାରେ ପଡ଼ି ଏକଡ଼ ସେକଡ଼ ଗଡ଼େଇ ତଡ଼େଇ ହେଉଛି । ଚମ୍ପା ଭାରି ଖପା ହେଲାପରି ଗର୍ଜନ କରି କହିଲା; "କଲୋ ବୋହୂ ! କମ୍ବୀରଟା ପରି ପେଟେ ଖାଇ ବଢ଼ଣାରେ ଗଡ଼େଇ ହେଉଛୁ, ଘରେ ପାଇଟି କରିବ କିଏ ଲୋ ? ତୁ ହାଙ୍ଗରେ କଣ ଗୋଟାଏ ପୋଇଲୀ ଆଣିଛୁ କଲୋ ?" ଆଉ କଣ ସମ୍ଭାଳା ଯାଏ ? ବୋହୂଟା ତ ସହଜରେ ଥିଲା ବଦ୍‌ରାଗୀ; ପୁଣି ତାର ବିଶ୍ୱାସ, ସେ ହେଲା ଘରେ ସାଆନ୍ତାଣି, ଏମାନେ କେହି ନୁହନ୍ତି । ଏଇଟା ପୁଣି ଗାଳି ଦେବ ? କୋପରେ ଧଡ଼ପଡ଼ ହୋଇ ଉଠିଲା । ଲୁଗାଖଣ୍ଡି ସଜାଡ଼ି ପିନ୍ଧିବାକୁ ବେଳ ନାହିଁ । ମୁଣ୍ଡ ମୁକୁଳା । ଗର୍ଜନ କରି ଏକାବେଳକେ ଆରମ୍ଭ କରିଦେଲା "ପୋଇଲୀ ! କାହିଁ ଲାଗି, ଦୂର ହୋ । ମୁଁ ତ ସାଆନ୍ତାଣୀ, ତୁ କିଏ ଲୋ ?" ଗାଳି ଦେଉଛି ତ ଦେଉଛି, ସେଇ କଥା ସେଇ କଥା ବାର ବାର କହୁଛି । ଏଣେ

ଚମ୍ପା ହସି ହସି ଯାଇ ମା ହାତରୁ ଚୁଙ୍ଗୁଣିଟା ଛଡ଼ାଇ ନେଇ ଘର ପଛଁର ବସିଲା ।

କମଳା ଦେଈଙ୍କ କିଛୁ ଜଣା ନାହିଁ । କଳି ଶୁଣି ଅଥୟ ହେଲେ । କଳିକୁ ସେ ବଡ଼ ଡ଼ରନ୍ତି, କଳି ଜାଗାରୁ ପଳାନ୍ତି । ଦାଣ୍ଡରେ କେହି କଳି କଲେ, କବାଟ କିଳି ପକାନ୍ତି । ବୋହୂକୁ ଚୁନ କରାଇବାକୁ ଆସୁଥିଲେ, ଚମ୍ପା ହାତଧରି ଛାଡ଼ି ଦେନଗଲା ।

ବୋହୂଟା ଗର୍ଜି ଗର୍ଜି ଥକିଯାଇ ଦୁଲ୍‌କର ବିଛଣାରେ ପଡ଼ିଗଲା । ତେତିକି ବେଳେ ଚମ୍ପା ପାଇଛି ଛୁଡ଼ି, ହସି ହସି ଖୁବ୍ ଗୋଟାଏ କ୍ରୋଧ କଲାପରି କହିଲା, "କାହିଁ ଗଲା ସେ ପୋଇଲୀ ନଅାଁ ଲାଗି ? ଚୁଙ୍ଗୁଣିରେ ତା ମୁଣ୍ଡରେ ଦଶ ପାହାର ପିଟିବି । ଅଲପାଇସିଆ ନାଆଁ ଲଗା ତା ଭାଇକୁ ଧରି ଆଣି, ଗୋଟି ଗୋଟି ଗଣି ଗଣି ତା ମୁଣ୍ଡରେ କୋଡ଼ିଏ ଚୁଙ୍ଗୁଣି ପିଟିବି ।" ପୁଣି ବୋହୂ ରାଗି ଉଠିଲା । ଚମ୍ପାକୁ ଗାଳି ଦେବାକୁ ଲାଗିଲା । କମଳା ଦେଈ ଧାଇଁ ଆସି କହିଲେ, ନାହିଁରେ ମା, ନାହିଁରେ, ତାଙ୍କୁ ଗାଳି ଦେ ନାରେ ମା, ତା ମା କଣ୍ଠରେ ନାହିଁରେ, ଶୁଣିଲେ କାନ୍ଦିବରେ ।" ଚମ୍ପା କହିଲା, "ତା ମା କାନ୍ଦୁ, ଏ ନଅାଁ ଝିଅକୁ କ୍ୟା ମାରି ନ ପକାଇ ଏଠିକି ପଠାଇଛୁ ? ଏଇ ଚୁଙ୍ଗୁଣିରେ ଏ ପୋଇଲୀକୁ ମାରି ପକାଇବି । ଗୋଟିଏ ବଡ଼ ସୁନ୍ଦର ବୋହୂ ଠିକ୍ ହେଲାଣି, ଆଜି ବାହାଘର ସବୁ ଠିକ୍ ହୋଇଯିବ ।"

ଶିବୁବାବୁ ଦାଣ୍ଡ ପଟରେ ଥିଲେ । ଧାଇଁ ଆସି ଚମ୍ପା ହାତ ଧରି ଭିଡ଼ି ଭିଡ଼ି ନେଇ ଆସିଲେ "ଆ, ଚମ୍ପା ଆ, ମା ତାଙ୍କ ପୁନ'ବୋହୂକୁ ନେଇ ଘରେ ଥାନ୍ତୁ, ଆମେ ଦୁଇ ଜଣ ଘରୁ ବାହାରିଯିବା ।" ଦୁଇ ଜଣ ମୁହଁରେ ଲୁଗା ଦେଇ ଟିକିଏ ହସି ହସି ଦାଣ୍ଡକୁ ଚାଲିଆସିଲେ । ବୁଢ଼ୀ ନପରପଯର ହୋଇ ପଛରେ ଧାଇଁଛନ୍ତି, "ଆରେ ତୁମ୍ଭେମାନେ ଯାଅ ନାହିଁରେ । ଆରେ ଶିବୁ, ଢେର୍ ବେଳ ହେଲାଣି ରେ, ଚମ୍ପା ଭାତ ବଢ଼ାଇଛୁ, ଦିଟା ମୁହଁରେ ଦେଇ ଯା ରେ ।"

ଶିବୁ—ଆଚ୍ଛା, ତୁ ଏଇ ଝିଅ ରାଏ ପକା, କିଛୁ କହନ୍ତୁ ନାହିଁ । ନୋହିଲେ, ଆମେ ଦୁହେଁ ଖାଇବା ପିଇବା ନାହିଁ, ଘରୁ ବାହାରିଯିବା ।

କମଳା ଦେଈ—ମୋ ମା ରାଣ ପକାଉଛୁ, ଆଖି ଛୁଉଁଛୁ, କିଛୁ କହିବି ନାହିଁ ।

ଏଣିକି ପୁଅଝିଅ ଉପରରେ ବିମଳା ଦେଈ କିଛି କହି ପାରୁ ନାହାନ୍ତି, ଖାଲି ବାଡ଼ି ଘର ହେଉଛନ୍ତି । ପୁଅ ଝିଅ ନ ଥିବା ବେଳେ ଟିକିଏ ବୋହୂ ଦୁଆରକୁ ଚାହିଁ ଦେଉଛନ୍ତି ।

ଚମ୍ପା ଭାତ ଥାଳି ପକାଇ ଫେରେ ବୋହୂର ଦୁଆରକୁ ଗଲା । ପୁଣି ଥାଳି ଅଇଁଠା କଲା । ଦେଖିଲା, ବୋହୂର ଆଉ ଉଠିବାର ଶକ୍ତି ନାହିଁ । ବାଛୁରୀ ତତଲା ଲୁହା ଦାଗ ଦେବାବେଳେ ଯିମିତି ଗଁ ଗଁ ଗର୍ଜେ, ସେହିପରି ଗର୍ଜୁଛି ।

ବୋହୂ ବିଛଣାରେ ପଡ଼ି ପଡ଼ି ମନରେ କଳାଣି, "ମୁଁ ଆଉ କଣ ସାଆନ୍ତାଣୀ ? ନଣନ୍ଦଟା ଏତେ ଗାଳି ଦେଉଛି, ମୋ ଲାଗି କେହି ପଦେ କହୁ ନାହିଁ । ପୁଣି ଭାଉଜଭଉଣୀ ମିଳିଗଲେଣି । କଣ, ସେ ପୁଣି ଆଉ ଗୋଟାଏ ବିଭା ହେବେ ? ମୋ ଦଶା କଣ ହେବ । ଶାଶୂ ତ ପାଖ ପଶୁ ନାହାନ୍ତି । ମୁଁ କଣ କରିବ ?" ତୁନି ହୋଇ ବିଛଣାରେ ପଡ଼ିଥାଏ । ବାହାରେ କଣ କଥା ହେଉଛି କାନ ଡେରି ଶୁଣୁଥାଏ ।

ସେତିକିବେଳେ ଚମ୍ପା ଭେଁ, ଭେଁ କରି ଶଙ୍ଖଟାଏ ବଜାଇ ଦେଲା । ଆଲୋ ବାଉକାଣି ! ଯା, ଦୂବ ବରକୋଳି ପତ୍ର, ଚନ୍ଦନ, ସିନ୍ଦୂର, ଆଉ ଚଳ ସବୁ ସଜାଡ଼ି କରି ରଖିଦେ । ଏ ବାଉକପୁଅ, ବଡ଼ ଘର ଝାଡ଼ୁଝୁଡ଼ି ଆସନ ପକାଇ ରଖ, ପାଣିପଣା ସବୁ ଠିକ୍ କର, କଣ ଆଉ ବେଳ ଅଛି ? ସେତେବେଳକୁ ସାଆନ୍ତମାନେ ଆସିଗଲେ କଣ କରିବୁ ? (ଭେଁ ଭେଁ, ଭେଁ ଶଙ୍ଖ ବାଜିଲା) ଆରେ ଶାମା, ମିଠାଇ ଥାଳିଟା ଭିତରେ ରଖିଦେ । କଣ କହିଲୁ ରାଧିକା ? ଦହି ସର ବିଲେଇ ଖାଇଗଲା ? ମଲା ଯା । ସାଆନ୍ତମାନେ ଜଳଖିଆ କରିବେ କଣ ?"

ଚମ୍ପା ରନ୍ଧାବଢ଼ା କରି ଭାଇଙ୍କୁ ମା'ଙ୍କୁ ଖୁଆଇଲା । ମା କହିଲେ, "ତୁ ଦି'ଟା ଖା ।" ଆଉ ବୋହୂ, ପୁଅ ଉପରେ ନଜର ପଡ଼ିଗଲା—ଡରିଯାଇ କହିଲେ, "ନାହିଁ ନାହିଁ ମୁଁ କହୁଛି, ଚମ୍ପୀ ଏକା ଖାଇବ ।" ଶିବୁବାବୁ କହିଲେ, "ହଁ ଖବରଦାର, ବୋହୂ ନାମ ଧରନା ।" ମା ବାଡ଼ି ଦୁଆରକୁ ପଳାଇଲେ ।

ବେଳ ବୁଡ଼ ବୁଡ଼ ହେଲଣି । ଅମ୍ମା ଆଈ ବାଡ଼ି ଖଣ୍ଡିଏ ଧରି ଅଇଲେ । ବୋହୂକୁ ଶୁଣାଇ ଶୁଣାଇ କହିଲେ, "କଲେ ଚମ୍ପୀ ! କଣ ହେଉଛି ? ଏ ଫୁଲମାଳ ଚନ୍ଦନ ସିନ୍ଦୂର ସବୁ କଣ ହେବ ?"

ଚମ୍ପୀ—ଏଇ ଦେଖୁନାହିଁ; ଭଗବାନଙ୍କ ଅଉ ଗୋଟିଏ ବଗ ହେବେ ଯେ ! ଆଜ ମହାପ୍ରସାଦ ଉଠା ଯେ ! ତୁ ଯା, ଘରେ ପିଠାଇ ଦହି ଅଛି । ଅଣ୍, ଖା ଯାଏ । ତତେ ବାଢ଼ି ଦେବାକୁ ମୋର ବେଳ ନାହିଁ ।

ଭେଁ—ଭେଁ—ଶଙ୍ଖ ବାଜଲା । ଯାଙ୍ଗେ ଯାଙ୍ଗେ ହୁଳହୁଳ ।

ଆଇ—ଅଚ୍ଛା, ନୂଆବୋହୂ ଅସିବ, ଏ ବୋହୂଟା କଣ କରିବ ?

ଚମ୍ପା—ମଲ ଯା । ଏଇଟା କ ବୋହୂ ! ଘର ଦୁଆର ପାଇଟି କରିବ, ରନ୍ଧାବଢ଼ା କରିବ, ଏଥିଲାଗି ସିନା ଭଲ ଏଇଟା ଆଣିଥିଲେ—ଏଇଟା ତ କିଛି ଜାଣି ନାହିଁ, ବୋହୂ କଣ ?

ଆଇ—ଅଚ୍ଛା, ଏ ବୋହୂଟା ଖାଇବ କଣ ?

ଚମ୍ପା—କଣ ଖାଇବ ? ସେ ବୋହୂ ଖାଇଲେ ଯାହା ଛାଡ଼ିଯିବ, ଏଟା ତା ଅଇଁଠା ଖାଇ ବାସନ ମାଜି ପକାଇବ ।

ଆଇ—ଅଚ୍ଛା, ମୁଁ ଟିକିଏ ବୋହୂଟାକୁ ଦେଖି ଆସେଁ ।

ଚମ୍ପା—ନା ଲୋ ଆଇ, ନା—ନା, ତା ପାଖକୁ ଯା ନା । ସେଟା ସିମିତ ପଡ଼ି ପଡ଼ି ଉପାସରେ ମରିଯାଉ ।

ଚମ୍ପା ମୁରକ ମୁରକ ହସି କଣ ଠାରିଦେଲା । 'ଅଚ୍ଛା ଅଚ୍ଛା ଅରେ ଦେଖେଁ' କହି ଅନା ଆଇ ସିମିତ ପାଖକୁ ଯାଇଛି, ବୋହୂ ଉଠିପଡ଼ି ବୁଢ଼ୀର ଦୁଇଗୋଡ଼ ଜାବୁଡ଼ି ଧରିଲା । କଥା କହିପାରୁ ନାହିଁ, ଗୋଡ଼ ଯୋଡ଼ାକ ଧର ଧକେଇ ହେଉଛି । ବହୁତ କଷ୍ଟରେ କହିଲା, "ଆଇ—ତା—କ୍ତି—କ—ଅ—ବା —ଏ—ବେ—ନ—ଇଁ ।"

ଆନା ଆଇ—ମୋ କଥା କଣ ସେ ଶୁଣିବ ? ତୁ ତ ଘରେ କିଛି କାମ ପାଇଟି କରିବୁ ନାହିଁ, ଭାତ ରାନ୍ଧିବୁ ନାହିଁ, ସବୁ କଥାରେ କଳି କରିବୁ, ସେଥିଲାଗି ଆଉ ଗୋଟିଏ ବୋହୂ ଆସୁଛି ।

ବୋହୂ—ମୁଁ—ସ—ବୁ—କ—ରି—ବ ।

ଅନା ଆଇ—ଅଚ୍ଛା, ତୁ ଶିବୁକୁ କହ ! ଆରେ ଶିବୁ ଏଟିକି ଆ' ତ, ବୋହୂ କଣ କହୁଛି ଶୁଣ ।

ଶିବୁ,—ନା, ନା ମୁଁ ଯାଇପାରିବ ନାହିଁ ।

ଏଣେ ବୋହୂର ଯେତେ ବଳ, ଅମା ଆଈର ଗୋଡ଼ ଜାବୁଡ଼ି ଧରିଛି । କେଜାଣି ଗୋଡ଼ ଯୋଡ଼ାକ ଖସିଯିବ ପଛକାଇବ । ସେହି ଆଈ ପଦ୍ମପାଦ ଛଡ଼ା ଯେ ବର୍ତ୍ତମାନ ଜମା ଦେଖିଲେଇ ସଂସାରରେ ଆଉ ଭରସା ନାହିଁ । ଅମା ଆଈ ପାଟିଂ କରି ଡ଼ାକିଲେ, "ଆରେ ଶିବୁ, ମୋ ଗୋଡ଼କୁ ବଡ଼ କାଟିଲାଣି ରେ ।"

ଶିବୁବାବୁ ଯିମିତି ପାଖକୁ ଆସିଛନ୍ତି,ଅମା ଆଈ ତ ତାଙ୍କ ଗୋଡ଼ ଯୋଡ଼ାକ ବୋହୂ ଜମା କରିଦେଇ ଅଲଗା ହୋଇଗଲେ । ବୋହୂ ଭଲକରି ସ୍ୱାମୀର ଗୋଡ଼ ଜାବୁଡ଼ି ଧରିଲା । ଗୋଡ଼ ଛାଡ଼ିଲେ ସିନା କୁଆଡ଼େ ଯିବ ? ସଂସାରଯାକ ସବୁ ଅନ୍ଧାର—'ପଦ୍ମପାଦ ଯୋଡ଼ିକ ଭରସା ।' ଅମା ଆଈ ବୋହୂ ଲାଗି ସୁପାରିସ କରି କହିଲା—"ଆରେ ଶିବୁ ! ବୋହୂ ଏଣିକି ଘରକାମ ପାଇଁକି ସବୁ କରିବ, ତୁ ରାଜି ହୋ ନା ।" ଶିବୁବାବୁ କହିଲେ "କାହିଁ ସେ ତ ଆଉ ପଦ କହୁ ନାହିଁ ? ଏହି କଥା ପଦକ ଶୁଣି ବୋହୂର ବଡ ଭରସା ହୋଇଗଲାଣି । ଚଞ୍ଚଳ କହି ପକାଇଲା, ହୁଁ—ହୁଁ—ଉଁ—ଉଁ—।"

ଶିବୁବାବୁ କହିଲେ "ମୁଁ—ହୁଁ—ହୁଁ—ଉଁ—ଉଁ ବୁଝେ ନାହିଁ । ସଫା କରି ଗୋଟି ଗୋଟି କଥା କହୁ ।" ଶିବୁବାବୁ ଯେମିତି କହିଲେ, ବୋହୂ ଠିକ୍ ସିମିତି ଗୋଟି ଗୋଟି କରି ସବୁ କଥା ଜବାବ କଲା ।

ଶିବୁବାବୁ ତାହା ବାଦେ କହିଲେ, "ଆଚ୍ଛା ଆଈ, ସେ କିଆଁ ଚମ୍ପୀ ସାଙ୍ଗରେ କଳି ଲଗାଇଲା ?" ଘମ୍ଭୁ ଭୂଇଁରେ ନାକ ।" କିଛି ଉତ୍ତର ନାହିଁ— ବୋହୂ ଭୂଇଁରେ ନାକ ଘଷିଲା । ଚମ୍ପା ଠିଆ ହୋଇ ହସୁଥିଲା । ବୋହୂ ନାକଘଷା ବେଳେ ପଳାଇଲା । ବୋହୂ ଆଈ ପାଖରେ ବି ନାକ ଘଷିଲା । ଶିବୁ କହିଲେ "ଆଚ୍ଛା ଆଈ, ମାଙ୍କ ପାଖରେ ଏପରି କହୁ !" ଗଲେ ସମସ୍ତେ ମା'ଙ୍କ ପାଖକୁ । ବୋହୂ ଗୋଟି ଗୋଟି କରି ସବୁ କଥା କହିଲା । ମାଟିରେ ନାକ ଘଷିବାବେଳେ ମା ଟିକିଏ ଦୁଃଖ କରି କହିଲେ, "ହଁ ରେ, ହେଲାଣି ରେ, ବୋହୂ ସବୁ କରିବରେ ।" ଶିବୁବାବୁ କଟମଟ କରି ଚାହିଁବାରୁ 'ନାରେ— ନା ରେ' କହି ଖସଲାଦେଇ ବାଡ଼ିଆଡ଼କୁ ପଳାଇଲେ ।

ଶିବୁବାବୁ କହିଲେ, 'ଅଚ୍ଛା ଏଥର ଚମ୍ପାର ଗୋଡ଼ ଧରୁ ।' ଚମ୍ପା ଧାଇଁଆସି ବୋହୂକୁ କୁଣ୍ଢେଇ ପକାଇଲା । "ନା ନା, ଯେତେହେଲେ ମୋ ବଡ଼ଭାଉଜ, ମା ପରି । ମୁଁ ସିନା ତା ଗୋଡ଼ତଳେ ପଡ଼ିବ ।" ଚମ୍ପା ବୋହୂକୁ କୁହାଉଛି ଏ କଣ କୁଣ୍ଢେଇ ପକାଇଲା । ନନ୍ଦେ-ଭାଉଜ ଦୁହେଁ ଟିକଏ କନ୍ଦାକନ୍ଦି ହେଲେ । ଚମ୍ପା କାହିଁକି କାନ୍ଦିଲା ? ମାତ୍ର ସେ କାନ୍ଦୁଛି । ଚମ୍ପା ବୋହୂକୁ ବାଡ଼ିଆଡ଼କୁ ଭିଡ଼ି ନେଇଗଲା । ଅଧଘଣ୍ଟାଏ ମାଲିସ ଲଗାଇ ଦେଇ ଗାଧେଇ ଆଣିଲା । ଚମ୍ପା ରନ୍ଧାବଢ଼ା କରି ମା ଭାଇଙ୍କୁ ଖୁଆଇଲା । ବୋହୂଟା ଚୁପଚାପ ଅଛି, ନକେ କେମିତି ଖାଆନ୍ତା ? ନନ୍ଦେ-ଭାଉଜ ଏକ ସଙ୍ଗରେ ବସି ଖାଇଲେ । ବୋହୂ ଟିକୁଣାଏ ପାଣି ପିଇ ଲଠକରି ଭୂଇଁରେ ପଡ଼ିଗଲା ।

ତହିଁ ଆରଦିନ କାହିଁ କା କରିବାବେଳକୁ ବୋହୂ ବାସି ପାଇଟି ସାରି ବସିଛି । ଟିକଏ ଡେରି ହେଠିଲାବେଳକୁ ଚମ୍ପା ଆସି ଦେଖିଲା, ସବୁ ବାସିପାଇଟି ସରିଲଣି । ମନ ମଧ୍ୟରେ ଟିକଏ ଖୁସି ହେଲା । ନନ୍ଦେ ଭାଉଜ ଦୁହେଁ ସାଙ୍ଗସୁଙ୍ଗା ହୋଇ ଗାଧୋଇ ଗଲେ । ପ୍ରଥମେ ପ୍ରଥମେ ବୋହୂ ରାନ୍ଧି ଜାଣୁ ନ ଥିଲା, ଚମ୍ପା ଶିଖାଇ ଦେବାରୁ ଏବେ ବେଶ୍ ରାନ୍ଧେ । ଶାଶୂ କିଛି ପାଇଟି କରିବାକୁ ଗଲେ ବୋହୂ ହାତରୁ ଛଡ଼ାଇନିଏ । ପୁଅଝିଅ ଉପରେ ବ ବୁଢ଼ୀ କିଛି ପାଇଟିରେ ହାତ ଦିଅନ୍ତି ନାହିଁ । ଏକ ଯାଗାରେ ବସି ବୋହୂକୁ କହି ଦେଉଥାନ୍ତି ।

ବିମଳା ଦେଇ ଏକ ଜାଗାରେ ବସି ଦିନ ରାତି ମାଳାଟି ଗଡ଼ାଉଥାନ୍ତି । କେହି ଲୋକ ଗାଁରୁ ଆସିଲେ ତା ପାଖରେ ଖାଲି ବୋହୂର ପ୍ରଶଂସା । ଦିନକୁ କୋଡ଼ିଏ ଥର ଯାହା ତାହା ପାଖରେ ଖାଲି ବୋହୂର ପ୍ରଶଂସା । ଦିନକୁ କୋଡ଼ିଏ ଥର ଯାହା ତାହା ପାଖରେ କହନ୍ତି, "ମୋର ତ ସୁନାବୋହୂ ।



# ମୁଣ୍ଡା ଶାହାଡ଼ା

ଶ୍ରୀ ଗୋଦାବରୀଶ ମହାପାତ୍ର

ଯେ ଯୁଗରେ ରାମଚନ୍ଦ୍ର ସୁନାର ମୂର୍ତ୍ତିକୁ ସୀତା ବୋଲି ଗ୍ରହଣ କଲେ, କେହି ହେଲେ ଆପତ୍ତି କଲେ ନାହିଁ, ମାତ୍ର ଗଙ୍ଗା ନାହାକ ଯେଉଁ ଦିନ ଗୋଟାଏ ଶାହାଡ଼ା ଗଛକୁ ତା'ର ପ୍ରଣୟିନୀ ବୋଲି କହି ଘନ ଘନ ଚୁମ୍ବନ ଦେବାକଥା ଗାଁରଆଡ଼େ ରାଷ୍ଟ୍ରହେଲା, ଲୋକେ ତାକୁ କହିଲେ ପାଗଳ । କାରଣ ରାମଚନ୍ଦ୍ର ଥିଲେ ଅଯୋଧ୍ୟାର ରାଜା, ଆଉ ଆମର ଗଙ୍ଗା ନାହକ ହେଲା ଏ ଯୁଗର ବାଜପୁର ଗାଁର ଏକ ବଗିଚାର ମାଳୀ !!

ବଗିଚାରେ କେତେ ପ୍ରକାର ଗଛ ଅଛି । ଜାଇ, ଯୁଇ, ମଲ୍ଲୀ, ମାଳତୀଠାରୁ ଆରମ୍ଭ କରି ଜାମୁ, କମଳା, ପପେଟା, ଲେମ୍ବୁ ପର୍ଯ୍ୟନ୍ତ ରହିଛି । ଫୁଲଗଛ ଅଛି, ଫଳ ଗଛ ମଧ୍ୟ ଅଛି । ଫୁଲ୍ ଫଳ କିଛି ନ ଥାଇ ରଙ୍ଗିନ୍ ଗଛ ମଧ୍ୟ ଶୋଭା ପାଉଛି । ଏ ସବୁର ସାର୍ଥକତା ଅଛି । ଫୁଲର ସୁବାସ ଅଛି, ଫଳର ସ୍ୱାଦ ଅଛି ପତ୍ରର ସୌନ୍ଦର୍ଯ୍ୟ ଅଛି; ମାତ୍ର ଗୋଟିଏ କଥା ବୁଝି ହେଲା ନାହିଁ, କି କାରଣରୁ ଗଙ୍ଗା ନାହାକ ଏଡ଼େ ବଡ଼ ବଗିଚା ଭିତରେ ଗୋଟିଏ ଶାହାଡ଼ାଗଛ ପାଳିଛି !

ସେହି ଶାହାଡ଼ାଗଛଟାକୁ ଖାଲି ଶାହାଡ଼ାଗଛ କହିଦେଲେ ଚଳିବ ନାହିଁ, ତାହା ଏକ ମୁଣ୍ଡା ଶାହାଡ଼ା । ଦେଖିଲେ ଜଣାପଡ଼େ ତାହା ଯେପରି ଦୈତ୍ୟଯୁଗର ଏକ ଭୂତ ! ଗଣ୍ଡିରେ ଖାଲି ଗଣ୍ଠି ପରେ ଗଣ୍ଠି, ଉପରକୁ ଛତା ଟେକିଲା ପରି କେତେ ଗୁଡ଼ାଏ ଖଣ୍ଡିଡାଳ ଦେହରେ ଖାଲି ଛୋଟ ଛୋଟ ପତ୍ର । ସତେ ଅବା ଭୂତଟା କେତେକାଳ ହେଲା ମୁଣ୍ଡରେ ତେଲହାତ ନ ମାରି, ବାଳ ନ ସଜାଡ଼ି ସେହିପରି ଠିଆ ହୋଇଛି ।

---

**ଗାଳ୍ପିକ:** (୧୮୯୮-୧୯୬୫) ଜଣେ ବାସ୍ତବବାଦୀ କଥାକାର ରୂପେ ସୁପରିଚିତ । ଜନ୍ମଭୂମି ବାଣପୁର । ନିଆଁଖୁଣ୍ଟାର ସମ୍ପାଦକ । ଜଣେ ଦକ୍ଷ ବ୍ୟଙ୍ଗ-ଲିପିକାର ଓ ମତବାନ୍ ସମାଜ ସଚେତକ । 'ନୀଳ ମାଷ୍ଟ୍ରାଣୀ' 'ଏବେ ମଧ୍ୟ ବଞ୍ଚିଛି,' 'ମୁଁ ଦିନେ ମନ୍ତ୍ରୀଥିଲି' ପ୍ରଭୃତି ହେଉଛି ତାଙ୍କର ଶ୍ରେଷ୍ଠ ଗଳ୍ପ-ଗ୍ରନ୍ଥ । ମାନବିକ ସମସ୍ୟାବଳୀ ଏବଂ ତାହାର ଜୀବନ୍ତ ଅଭିବ୍ୟକ୍ତିରେ ତାଙ୍କର ଗଳ୍ପ ସମୃଦ୍ଧ ପରିପୁଷ୍ଟ ।

ମୁଣ୍ଡା ଶାହାଡ଼ା !—କେତେ ମୁଗର, କେହି ତାହା ଜାଣନ୍ତି ନାହିଁ । ଗାଁର ସବୁଠାରୁ ବୃଦ୍ଧାଙ୍କୁ ତାଙ୍କର ଇତିହାସ ପଚାରିଲେ ସେ କହନ୍ତି ଯେ, ତାଙ୍କ ଗୋସେଇଁ ବାପେ କେବେ ଥରେ ସେହି ଗଛକୁ ବାହା ହୋଇ ବୃତ୍ତାନ୍ତ ପକ୍ଷ ଗ୍ରହଣ କରିଥିଲେ, ଆଉ ସେ କହୁଥିଲେ ତାଙ୍କ ପୂର୍ବରୁ ଅନେକ ଲୋକ ତାହାର ମୂଳେ ଅନେକ ହାତଗଣ୍ଠି ପକାଇ ବାହା ହୋଇଛନ୍ତି । ତେଣୁ ଗଛଟାକୁ ଦେଖିଲେ ଖାଲି ଯେ ତା'ର ରୁକ୍ଷ ଅସୁନ୍ଦର ବିକଟ ରୂପ ଆଖିରେ ପଡ଼େ ତାହା ନୁହେଁ, କେତେଗୁଡ଼ିଏ ପ୍ରଣୟର ପତଳା ପରଦା କାଳର କେତେ ବର୍ଣ୍ଣ-ତରଙ୍ଗ ଭେଦ କରି ନବ ନବ ରୂପରେ ଆଖି ଆଗରେ ଛନ୍ଦି ହୋଇ ନାଚିଯାଏ । କି ଚମତ୍କାର !

ସର୍ତ୍ତ୍ୟମୁଗର ଗଛ ! କିଏ କହିବ ? ସେ ଯେବେ କଥା କହୁଥାନ୍ତା ଅନେକ ଲୋକର ଅନେକ ରହସ୍ୟ ଜଣା ପଡ଼ନ୍ତା । ପ୍ରଣୟର ବହୁମୁଖୀ ସ୍ରୋତର ଗତି ସେ ଦେଖାଇ ପାରନ୍ତା !

ସେ କିଛି କହେ ନାହିଁ—ସେ କେବଳ ଲୀଳା ଦେଖେ । ଦେଖେ ତାହାର ମୂଳେ ପ୍ରଣୟର କେତେ କେତେ ଲୀଳା ଚାଲିଛି । ଦାସେ ଆସୁଛନ୍ତି, ପଣ୍ଡିତେ ଆସୁଛନ୍ତି, ମହାନ୍ତିଏ ଆସୁଛନ୍ତି—ତାହାର ପାଖେ ଠିଆ ହୋଇ କାହାର ଲାଲ ଟକ୍ ଟକ୍ ମଧୁର ଅଧର କଳ୍ପନା କରି, କାହାର ଘନକୃଷ୍ଣ କେଶଗୁଚ୍ଛ ମାନସ-ଚକ୍ଷୁରେ ଦେଖି, କାହାର କୋମଳ କରପଲ୍ଲବର ସ୍ପର୍ଶ କଳ୍ପନାରେ ଅନୁଭବ କରି ତାକୁହିଁ ସାକ୍ଷୀ ରଖି ସମସ୍ତେ ଚାଲିଯାଉଛନ୍ତି ! ପ୍ରଣୟର ସାକ୍ଷୀ, ପରିଣୟର ସାକ୍ଷୀ, ମୃତ୍ୟୁର ସାକ୍ଷୀ, ବୃଦ୍ଧର ସାକ୍ଷୀ, ଭଙ୍ଗୁର ସଂସାରର ଭଙ୍ଗୁରତାର ସାକ୍ଷୀ ସେହି ଅବହେଳିତ ମୁଣ୍ଡାଶାହାଡ଼ା । ସେ ବରିଗ୍ରାମର ଏକ ପୁଣ୍ୟମୟ କୋଣାର୍କ କହିଲେ ଚଳେ । ଓଡ଼ିଶାର ମହାରାଣୀ ମାୟାଦେବୀଙ୍କ ସ୍ମୃତି ଉପରେ କୋଣାର୍କ ତିଆରି ହେଲା; ମାତ୍ର ମୁଣ୍ଡାଶାହାଡ଼ା ମୂଳେ ଯେ କେତେ କେତେ ମାୟାଦେବୀ ସ୍ମୃତିରୂପେ ରହିଛନ୍ତି, କିଏବା ଗଣନା କରି କହିବ ? ତାଜମହଲର ପ୍ରତି ପଥର ଖଣ୍ଡରେ ପ୍ରେମିକ ପ୍ରଣୟର ଛବି ଦେଖନ୍ତି, ମାତ୍ର ବାଜପୁର ବରିଗ୍ରାମର ମୁଣ୍ଡାଶାହାଡ଼ା ଗଛର ପ୍ରତି ପତ୍ରେ ପତ୍ରେ କେତେ ଯେ ପ୍ରଣୟ ନିଃଶ୍ୱାସ ପୂରି ରହିଛି, ତାହା ସେପାଖେ ଯିବା ଆସିବା କରୁଥିବା କେହି ପ୍ରଣୟ-ପାଗଳ ଆଦୌ ଅନୁଭବ କରିପାରେ ନାହିଁ । ମନୁଷ୍ୟ କି ବୋକା !

ତରୁ ସଂସାରର ମୁଣ୍ଡାଶାହାଡ଼ାକୁ 'ମାନବ-ସଂସାରର ମୁଣ୍ଡାଶାହାଡ଼ା ଗଙ୍ଗା ନାହକ କେବଳ ଚିହ୍ନେ । ଗଙ୍ଗାର ବୟସ କେତେ ଗଙ୍ଗା ତ ଜାଣେ ନାହିଁ, ସେହି ଦଶ ପାଞ୍ଚଖଣ୍ଡ ଗାଁ ଲୋକେ ମଧ୍ୟ କହି ପାରନ୍ତି ନାହିଁ । ତା'ର ଗଣ୍ଠିଲ ଦେହ ଉପରେ ମୁଣ୍ଡଟା ଗୋଟେ ବଡ଼ ଛତା ପରି ସତେ ଯେପରି ଗୋଟେ ଚଳନ୍ତି ମୁଣ୍ଡାଶାହାଡ଼ା ! ତା'ର କଥା ବିଚିତ୍ର, ତା'ର ବେଶଭୂଷା ଅଦ୍ଭୁତ ! କେତେ ବର୍ଷ ହେଲା ଝଡ଼, ବର୍ଷା, ଶୀତ ଜାକର ତା' ସଙ୍ଗେ ଲଢ଼ି ଲଢ଼ି ପରାସ୍ତ ହୋଇଛନ୍ତି । ସଞ୍ଜରୁ ସଞ୍ଜଯାଏ ସେ ବଗିଚାରେ ରହେ, ଗଛଗୁଡ଼ାକୁ ମଣିଷ ପରି ପାଳେ ।

ଏହି ମୁଣ୍ଡାଶାହାଡ଼ା ଗଙ୍ଗା ନାହାକକୁ ଲୋକେ ପାଗଳ କହିବାର ଅନେକ କାରଣ ଅଛି ! ବଗିଚା ଭିତରେ ଯେତେ ଯେତେ ଗଛ ଅଛି, ଗଙ୍ଗା ସେ ସବୁ ଗଛକୁ ମଣିଷର ନାଁ ଦେଇ ଡ଼ାକେ । ମନେ ଯେପରି ସେଗୁଡ଼ାକ ତା'ର ପିଲାପିଚିକା ! କାହା ନାଁ ରାମ, କାହା ନାଁ ଭଗିଆ, କାହା ନାଁ ମଦନା, କାହା ନାଁ ଗୋପୀ, କାହା ନାଁ ହରି, ମୁଣ୍ଡାଶାହାଡ଼ା ଗଛଟିକୁ ସେ ଡ଼ାକେ "ଚମ୍ପା" ବୋଲି ।

ଶାହାଡ଼ା ଗଛଟାକୁ 'ଚମ୍ପା' ବୋଲି କହିଲେ ଅନେକେ ଆଶ୍ଚର୍ଯ୍ୟ ହେବେ । ଶୁଣିବାକୁ ମଧ୍ୟ ନିତାନ୍ତ ଅସୁନ୍ଦର । ମୂକ ଗଛଗୁଡ଼ାକ ବୋଧହୁଏ ଚମ୍ପାଗଛ ପ୍ରତି ଏହି ଘୋର ଅପମାନରେ ବିଦ୍ରୋହୀ ହୋଇ ଉଠୁଥିବେ, ମାତ୍ର ଗଙ୍ଗା କେବେହେଲେ ତା'ର ମତ ବଦଳାଏ ନାହିଁ ।

ଏ କଥା ଦେଖି ଲୋକେ କହନ୍ତି "ପାଗଳ ଗଙ୍ଗା, ବାଉଳା ଗଙ୍ଗା ।"

ଗଙ୍ଗା ସବୁ ଓଲଟା କଥା କରେ । ବଡ଼ି ସକାଳୁ ମୁଣ୍ଡାଶାହାଡ଼ା ମୂଳଟି ଓଳାଇ ଦେଇ ତା'ର ଶୁଖିଲା ପତ୍ରଗୁଡ଼ିକ ଝାଡ଼ିଦେଇ ଆଗ ତାକୁ ବୁହାଟେ କୁଣ୍ଢାଇ ପକାଏ । ତା'ପରେ ତା' ସଙ୍ଗେ କଥାବାର୍ତ୍ତା ଚଳାଏ । କହେ— "ଚମ୍ପା, ଚମ୍ପା, ସତ କହ, ଥରେ ସତ କହ, ଲୋକେ ଭଲ କି ମୁଁ ଭଲ । ତୁ ସବୁ ସାକ୍ଷୀ ମୋର ! ତୁ ନ କହିଲେ କିଏ କହିବ ?" ଏହି କହି ଗଛଟାକୁ ଘନ ଘନ ଚୁମ୍ବନ ଦିଏ ।

ଶାହାଡ଼ା ଗଛଟା ସଙ୍ଗେ କଥା । ଯେ ଶୁଣେ ସେ ହସେ । ଶାହାଡ଼ା ଗଛଟାକୁ ଚୁମ୍ବନ ! ଯେ ଶୁଣେ ସେ ଅବାକ୍ ହୁଏ । ମାତ୍ର ଲୋକଙ୍କର ହସରେ

ବା' ଅନ୍ଧାରେ ଗଙ୍ଗାର କିଛି ଯାଏ ଆସେ ନାହିଁ । ଆଖି ବୁଜିଲି ପରି ତା' କାମ ସେ କରି ଯାଉଥାଏ ।

ଦିନେ ଗଙ୍ଗା ସହିତ ଦେଖା ହେଲା । ପଚାରିଲି—"ଗଙ୍ଗା, ଏ ବଗିଚାରେ ସବୁଠାରୁ ଭଲ ଗଛ କିଏ ?"

ଗଙ୍ଗା କହିଲା—"ଚମ୍ପା ।"

"ଚମ୍ପା ?"

"ହଁ, ବାବୁ"—କହି ସେ ଆଗେ ଚାଲିଲା । ମୁଁ ତା' ପଛେ ପଛେ ଚାଲିଲି । ସେ ଗୋଟାଏ ନିର୍ଧୂମ ଶାହାଡ଼ା ଗଛ ମୂଳେ ଠିଆହୋଇ କହିଲା—"ଦେଖିଲି ବାବୁ ! ଦେଖ ।"

ଅବାକ୍ ହୋଇ ଗଛଟାକୁ ଚାହିଁ ରହିଲି । ଚମ୍ପା ଗଛ ? କାହିଁ ?

ସେ କହିଲା—"ଚହ୍ନି ପାରୁନ ବାବୁ ? ଏଇ ପରା ।"

କହିଲି—"ଦୂର ପାଗଳ, ଏ ତ ଗୋଟାଏ ମୁଣ୍ଡାଶାହାଡ଼ା ।"

ମୋ କଥା ଶୁଣି ଗଙ୍ଗା ଖାଲି ଠୋ ଠୋ ହସିଉଠିଲା । ସେ କି ଉଦ୍ଦାମ-ହାସ୍ୟରୋଳ । ହସି ହସି ସେ ଗଛକୁ ଢଳି ପଡ଼ିଲା, ଆଗକୁ ଝୁଙ୍କି ପଡ଼ିଲା; ଗଛଟାକୁ କୁଣ୍ଢେଇ ଧରି ହସିଲା...ଖାଲି ହସିଲା ।

ହସ ତା'ର ବନ୍ଦ ହେଲା, ମାତ୍ର ସେ କ'ଣ ଭାବିଲା ପରି ଗଛଟାକୁ ଜାକିଧରି ଅନେକ ସମୟ ନୀରବରେ ଠିଆହେଲା । କିଛି ରହସ୍ୟ ବୁଝି ନ ପାରି ପଚାରିଲି—

"ଗଙ୍ଗା, ଏ କ'ଣ ?"

ମୁହଁକୁ ଗମ୍ଭୀର କରି ଗୋଟାଏ କିଛି ଗୁରୁତର କଥାର ଉପକ୍ରମ କଲା ପରି ସେ କହିଲା ।

"ଶୁଣି ପାରୁନ ବାବୁ ? ମୋର ଚମ୍ପା କ'ଣ କହୁଛି, ଶୁଣି ପାରୁ ନ ? ସେ କହୁଛି—ଆସିଲେ ଦିନେ ଦାସଘର ବଡ଼ପୁଅ । ମୋ'ର ଦୁଆରେ ବାଦ୍ୟ

ବାଜଲା, କାହାଳୀ ବାଜଲା, ମୁଁ ରହଲ ସାକ୍ଷୀ । ବର୍ଷକ ପରେ ଦେଖିଲି, ମୁଁ ଯାହାପାଇଁ ସାକ୍ଷୀ ଥିଲି, ତାକୁ ତେଇ ଦାସଘର ପୁଅ କାଳୀଟା ବୋଲି ବାଡ଼େଇ ବାଡ଼େଇ ମାରଦେଲା । ଥରେ ଆସିଥିଲେ ଗୁଡ଼ିଆ ଘରର ବୁଢ଼ା । ପାଞ୍ଚଟି ବାଳିକାର ହାତ ଧରଲା ପରେ ସେ ମୋର ପାଖରେ ଆସି ଠିଆହେଲା । ଓହୋ ! ସେ ଝିଅଟି ସେଥର ଉଖୁଡ଼ା ଚଟୁରେ ମାଡ଼ ଖାଇ ଖାଇ ମଲା । ପଲେଇ ଘରର ବୁଢ଼ା, ପଧାନ ଘରର ସାନ, ସାମଲ ଘରର ମଝିଆଁ – କ'ଣ କହବ, କେତେ ବା କହବ ? ଲୋକେ କହନ୍ତି, ସଂସାରରେ ପୁରୋହତ ବୋଲି ଜଣେ କଏ ଅଛ ! ପୋଡ଼ଯାଉ ସେ ପୁରୋହତ । ମତେ ସାକ୍ଷୀ ରଖି ଆଗ ପଛ ନ ବଚାର ସେ ସମସ୍ତଙ୍କୁ ଆଣି ମୋର ପାଖେ ଠିଆ କଲା । ଥରେ ନୁହେଁ, ଦୁ'ଥର ନୁହେଁ, ଚାରି ପାଞ୍ଚ ଥର ଲେଖାଏଁ ମୁଁ ସେହମାନଙ୍କ ସାକ୍ଷୀ ।''

ଗଙ୍ଗା ନାହାକର ଏ କଲ୍ପନା ଶୁଣି ମୁଁ ଅବାକ ଭାବରେ ଠିଆହେଲି । ଭାବଲି—ଏ କ'ଣ ସ୍କୁଲରେ କ୍ଲାସରେ ଇତହାସ ପଢ଼ାଉଛ ନା କ'ଣ ? ପାଗଳ ବୁଢ଼ା ଜ ଜୀବନର ଏତେ କଥା ଅନୁଭବ କରପାରେ ?

ପଚାରଲି—''ଆଚ୍ଛା ଗଙ୍ଗା, ଚମ୍ପା ତ ସମସ୍ତଙ୍କ କଥା କହୁଚ, ତମ କଥା ଭଲା କ'ଣ କହୁଚ ?

''ମୋ କଥା ? ମୋର ଚମ୍ପା ସେ, ମୋ କଥା କହବ ନାହିଁ ?''

''କହ ଭଲା ଶୁଣେ ।''

ବୁଢ଼ା ଗଙ୍ଗା ଯେ ଗଳ୍ପ କହଲା, ଶୁଣି କାଠ ହୋଇଗଲି । ସେହଦନୁ ବୁଝିଲି, ମଫସଲ ବାଜପୁରର ଅବହେଳତ ମାଳୀ ଗଙ୍ଗା ନାହାକ ବୁଢ଼ା ପାଗଳ ନୁହେଁ—ସେ ଏକ ପ୍ରଚଣ୍ଡ ତାଜମହଲର ମାଲିକ—ଏକ କୋଣାର୍କର ଅଧିକାରୀ । ଗଳ୍ପଟା ହେଉଛ—

ଗଙ୍ଗାକୁ ଯେତେବେଳେ କୋଡ଼ିଏ ବର୍ଷ ବୟସ, ତା'ର ବାହାପାଇଁ ବାପ ମା' କନ୍ୟା ଖୋଜଲେ । କେତେ ଆଉ କେତେ ପ୍ରସଙ୍ଗ ଆସିଲା । ଗଙ୍ଗା ସ୍ୱାହାଳରେ, ତା' ହାତରେ ସବୁ ପ୍ରସଙ୍ଗକୁ ନାହିଁ କରଦେଲା । ବାପ ମା' କେତେ ଗାଳିଦେଲେ, ଶେଷକୁ ଆଉ କିଛ ଦିନ ଅପେକ୍ଷା କର ତୁନି ହୋଇ ରହଲେ ।

ଗଙ୍ଗା ଚାକିରି କରୁଥିଲା ମଲ୍ଲପଡ଼ା ସରବରାକାରଙ୍କ ଘରେ । ଗୃହସ୍ଥ ଭିତରେ ତାକୁ ଘରର ଜଣେ ମଣିଷ ପରି ସବୁ କାମ କରିବାକୁ ପଡ଼ୁଥିଲା ।

ସରବରାକାରଙ୍କ ଝିଅ ଚମ୍ପା ଦିନେ ଗଙ୍ଗାକୁ ଗୋପନରେ ଆସି କହିଲା—"ଗଙ୍ଗା, ତୁ ଜଣକୁ ମାରି ପାରିବୁ ?"

ଗଙ୍ଗା କହିଲା; "ନା, ମୋ ହାତରେ ସେ କାମ ହବ ନାହିଁ ।"

ଚମ୍ପା ତା ହାତଟାକୁ ଧରି ପକାଇ ରୁଦ୍ଧ କଣ୍ଠରେ କହିଲା—"ମୋତେ ମାରି ପାରିବୁ ନାହିଁ ? ମତେ ଆଉ ଜଣେ ମାଇଲେ ତୁ ସମ୍ଭାଳିବୁ ?'

ଯୁବତୀର କଥା ଗଙ୍ଗା ମନକୁ ଟିକିଏ ଲାଗିଲା । ସେ ଜାଣିଲା ଯେ ଚମ୍ପା ପାଇଁ ଯେଉଁ ଅଶୀବର୍ଷର ପଞ୍ଚମ ପକ୍ଷ ବର ସାଙ୍ଗେ ବାହା କଥା ଉଠିଛି, ତାହାରି ଫଳ ଏ । ତା ମନରେ ଭାବାନ୍ତର ପହଞ୍ଚିଲା ।

ଚମ୍ପା ଗଙ୍ଗାର ଆହୁରି ପାଖକୁ ଲାଗିଯାଇ କହିଲା—"ତୁ ରେଙ୍ଗୁନ ଦେଖିଛୁ ...? ମୁଁ ଯିବି ଆଉ ତୁ ଯିବୁ ।' ...

ସେ ରାତିରେ ଗଙ୍ଗା କେବଳ ସ୍ୱପ୍ନ ଦେଖିଲା, ଚମ୍ପାକୁ, ଚମ୍ପା କେବଳ ଆଶା ରଖିଲା ଗଙ୍ଗାଠାରେ ।

ଦିନ ଦିନ କରି କେତେ ଦିନ ଗଲା । ଚମ୍ପା ନାଁ ଶୁଣିଲେ ଗଙ୍ଗା ଅନ୍ୟମନସ୍କ ହେଲା, ଗଙ୍ଗାକୁ ଦେଖିଲେ ଚମ୍ପାର ଦେହ ମୁଣ୍ଡ ଶୀତେଇ ଉଠିଲା । ଗଙ୍ଗା ଘରର ଆଉ କାହା ପ୍ରତି ଚାକର ହୋଇପାରେ; ମାତ୍ର ଚମ୍ପା ପ୍ରତି ନୁହେଁ ।

ଦୁଇଟା ତରୁଣ ପ୍ରାଣରେ କ୍ରମେ ଏକାବେଳକେ ଏକା ତାଳରେ ନିଶ୍ୱାସ ବହିଲା--ଏକାବେଳକେ ନିଶ୍ୱାସ ଝଡ଼ିଲା ।

ପଞ୍ଚମ ପକ୍ଷ ବର ପ୍ରସଙ୍ଗ ପର୍ବତ ପରି ସେ ଆଡ଼୍ ମାଡ଼ି ଆସିଲା, ଏଣେ ଏ ଯୁଗଳ ପ୍ରାଣ ପବନ ପରି ବିଚଳିତ ହୋଇଗଲା । ରାତିରେ ଦେଖା ହେଲା, ଦିନରେ ଦେଖା ହେଲା, ଦୁହେଁ ଦୁହିଁଙ୍କୁ ଖୁବ୍ ନିକଟରେ ଚହିଁଲେ ।

ଲୋକେ କହିବେ ଯାହାକୁ ଘୋର ଅନ୍ୟାୟ ! !

ଯା ପଛେ ପଛେ ଆସିଲା ପଞ୍ଚମ ପକ୍ଷ ବର ସଙ୍ଗେ ଷୋଡ଼ଶୀର ପ୍ରୀତି-ବନ୍ଧନର ଦିନ, ମାତ୍ର ବେଦୀ ଅପୂର୍ଣ୍ଣ ରହିଲା, ଉତ୍ସବ ଅଧାରେ ରହିଲା । ବିଷ୍ୱଦିନର ପୂର୍ବ ରାତିରେ ଦେଖାଗଲା, ଚମ୍ପା ଘରେ ନାହିଁ । ସେ ରାତ ରାତି ଗାଁ ସୀମା ପାରହୋଇ ଏକ ଶାହାଡ଼ା ଗଛରେ ଦଉଡ଼ି ଫାଶକରେ ଓହଳିଛି !

ଯା ପରେ ଗଙ୍ଗାର କଥା । ଗଙ୍ଗା ଆଉ ବିଭା ହେଲା ନାହିଁ । ସେ ଆସି ବଗିଚାର ମାଲୀ ହୋଇ ଚାକିରି କଲା । ଆଉ ଚମ୍ପା ଶୋଇଥିବା ଶାହାଡ଼ା ଗଛ ମୂଳେ ତା ଜୀବନର ପ୍ରଣୟ-ଦୀପ ଜାଳିଦେଲା । ଲୋକେ ତାକୁ କହିଲେ ପାଗଳ । ସେ ଶାହାଡ଼ା ଗଛକୁ ଡାକିଲା "ଚମ୍ପା !"

ସେହି ଦିନୁ ଯେତେବେଳେ ସେହି ବଗିଚା ବାଟେ ଯିବାକୁ ହୁଏ, ପ୍ରଥମେ ସେହି ଶାହାଡ଼ା ଗଛଟାରେ ଆଖି ପଡ଼େ । ଶେଷରେ ସଂସାରର ଏକ କ୍ଷୁଦ୍ର କୋଣରେ ଜଣେ ଯେ ଜଣକ ପାଇଁ ଏପରି ତରୁପତ୍ର ମୃତ୍ତିକା ପାଷାଣ ସୀମା ଭୁଲି ଯାଇପାରେ, ଏହା ଭାବି ଭାବି ଜଡ଼ୀଭୂତ ହେବାକୁ ହୁଏ ।



# ରୂପର ମୂଲ୍ୟ

ଶ୍ରୀ ଦୟାନିଧି ମିଶ୍ର

## ପ୍ରଥମ ପରିଚ୍ଛେଦ : ବିଦାୟ

"ତଦ୍‌ଗଚ୍ଛ ସିଦ୍ଧୈ କୁରୁ ଦେବକାର୍ଯ୍ୟମ୍ ।"
(କୁମାରସମ୍ଭବମ୍)

ସମ୍ବଲପୁରର ପଶ୍ଚିମ ଦିଗରେ ସହରଠୁ ପ୍ରାୟ ଏକମାଇଲ ଦୂରରେ ମଦଲିଆ ମୁହାଣ । ଏଠାରେ ଗୋଟିଏ ପ୍ରାଚୀନ ମନ୍ଦିର ଅଛି । କଲନାଦିନୀ ଚିତ୍ରୋତ୍ପଳା ମନ୍ଦିରର ଚରଣ ପ୍ରକ୍ଷାଳିତ କରି ଶିଳା-ବନ୍ଧୁର ମାର୍ଗରେ ଅଗ୍ରସର । ଲୋକେ କହନ୍ତି—ମନ୍ଦିରରେ ପ୍ରଚୁର ଧନରତ୍ନ ଓ ଅସ୍ତ୍ରଶସ୍ତ୍ର ଲୁକ୍କାୟିତ ଅଛି । ଏ ଉକ୍ତିର ସତ୍ୟତା ନିରୂପିତ କରିବାକୁ ଆମ୍ଭମାନଙ୍କର ଶକ୍ତି ନାହିଁ । ଆଜିଯାଏ କେହି ଏ ବିଷୟରେ ଅନୁସନ୍ଧାନ କରିନାହାନ୍ତି । ଏବଂବିଧ ପ୍ରତ୍ନତତ୍ତ୍ୱ ସଂଗ୍ରହ ଓଡ଼ିଶାର ଆଧୁନିକ ଜଳବାୟୁର ପ୍ରତିକୂଳ ପରି ! ସେ ଯାହାହେଉ, ମନ୍ଦିରକୁ ନୀଳମାଧବଙ୍କ ମନ୍ଦିର ବୋଲି କହନ୍ତି । ଏଠାରେ ଦେବପୂଜାର କୌଣସି ଚିହ୍ନ ପରିଲକ୍ଷିତ ହୁଏ ନାହିଁ—ମନ୍ଦିରରେ କୌଣସି ଦେବବିଗ୍ରହ ମଧ୍ୟ ନାହିଁ । ମନ୍ଦିରର ଏପରି ନାମକରଣ କିପରି ହେଲା, ପୁରାତତ୍ତ୍ୱଜିଜ୍ଞାସୁମାନଙ୍କ ଅନୁସନ୍ଧେୟ ।

---

ଗାଳ୍ପିକ : (୧୮୯୧—୧୯୫୫) ବି. ଏ., ଏଲ୍. ଟି ପାଶ୍ କରି କିଛି କାଳ ଶିକ୍ଷକତା କରିଥିଲେ । ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ (୧୯୧୯); କିଛି ବର୍ଷ ପାଇଁ 'ମୁକୁର'' ପତ୍ରିକାର ସମ୍ପାଦନା ଓ ପରିଚାଳନାରେ ସାହାଯ୍ୟ କରିଥିଲେ । ଆପଣାର ଜୀବିକାର୍ଜନ ପାଇଁ ଶେଷରେ ଆଇନ ପାଶ କରି ଓକିଲାତି କଲେ । ଐତିହାସିକ ଗଳ୍ପ ଲେଖକ ରୂପେ କୃତିତ୍ୱ ଯୋଗୁ ସେ ପ୍ରଶଂସିତ ହୋଇଥିଲେ । ସୁଭଦ୍ରା, ସଂଯୁକ୍ତା, ରାଣାପ୍ରତାପ ସିଂହ ପ୍ରଭୃତି ହେଉଛି ତାଙ୍କର ବଳିଷ୍ଠ ଗଦ୍ୟ ଗ୍ରନ୍ଥ । ଉତ୍କଳ ସାହିତ୍ୟ, ମୁକୁର, ଋତୁରେଣୁ ପ୍ରଭୃତି ପତ୍ର ପତ୍ରିକାରେ ତାଙ୍କର ରଚନା ପ୍ରକାଶ ପାଉଥିଲା । ଜଣେ ଐତିହ୍ୟବାଦୀ ଦେଶପ୍ରାଣ ଲେଖକ ଭାବେ ସୁପରିଚିତ ।

ପୁଣି ଏଠାରେ କୌଣସି ନଦୀର ସଂଗମସ୍ଥଳୀ ନ ଥିଲେ ସୁଦ୍ଧା ସ୍ଥାନଟିର ନାମ ମହାନଦୀ ମୁହାଣ କାହିଁକି ହୋଇଅଛି ? ବୋଧହୁଏ କାଳକ୍ରମେ ସେ ନଦୀ ଲୋପ ପାଇଅଛି କମ୍ବା ଦୁର୍ଗ ରକ୍ଷାର୍ଥ ସମ୍ବଲପୁରର ନରପତିମାନେ ନଦୀର ଗତିକୁ ପରିବର୍ତ୍ତିତ କରିଥିବେ । ନଦୀ-ସଂଗମ-ସୂଚକ ପ୍ରଶସ୍ତତା କେବଳ ମୁହାଣ ନାମରେ ସାର୍ଥକତା ସମ୍ପାଦନ କରୁଅଛି ।

ଜଗତରେ ବିଭବ ହିଁ ସମସ୍ତ ଆକର୍ଷଣର କେନ୍ଦ୍ର । ମନୁଷ୍ୟର ଦୃଷ୍ଟି ଯେପରି ଊର୍ଦ୍ଧ୍ୱକୁ ଚାହିଁ ଚାହିଁ ଊର୍ଦ୍ଧ୍ୱମୁଖୀ ହୋଇଗଲାଣି ପ୍ରଜା ଜମିଦାରର ଅନୁସରଣ କରୁଅଛି, ଜମିଦାର ରାଜାର ଅନୁସରଣ କରୁଅଛି; କିନ୍ତୁ ଲୋକଲୋଚନ ଅଗୋଚରରେ ଯେ କେତେ ଶତ ପ୍ରାଣୀ ଦୁର୍ବିସହ ଯାତନା ଭୋଗ କରୁଛନ୍ତି, ତାହାର ଖବର କିଏ ବୁଝେ ?

ନୀଳମାଧବଙ୍କ ମନ୍ଦିର ଅଧୁନା ଜୀର୍ଣ୍ଣକଳେବର । ତାହାର ସେ ପୁରାତନ ଗୌରବ ଆଉ ନାହିଁ । ମନ୍ଦିରବାଟେ କେତେ ଶତ ଲୋକ ପ୍ରତିଦିନ ଯାତାୟାତ କରୁଛନ୍ତି; କିନ୍ତୁ କେହି ଦିନେ ମନ୍ଦିର ଆଡ଼କୁ ମୁହଁ ଫେରାଇ ଦେଖୁ ନାହାନ୍ତି । ମନ୍ଦିରଟି ପୁରାତନର ଗୋଟିଏ ଅଂଶ ତାହା ବର୍ତ୍ତମାନର କିଛି ନୁହେଁ । କିନ୍ତୁ ଏହାର ଅବସ୍ଥା ଚିରଦିନ ଏପରି ନ ଥିଲା । ଆମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ, ସେ ସମୟରେ ମନ୍ଦିରର ପୂର୍ବ ମହିମା ଜଗତକୁ ମୁଗ୍ଧ ବିସ୍ମିତ କରୁଥିଲା ।

ବିମଳା ପ୍ରତିଦିନ ସନ୍ଧ୍ୟା ସମୟରେ ମନ୍ଦିରକୁ ଆସେ ଓ ନିଜ ମନକୁ ଗୀତ ଗାଇ ପୁଣି ଚାଲିଯାଏ । ସେଠାରେ ପ୍ରକୃତିର ଚାରୁ ଛବି ଦେଖି, ପ୍ରକୃତିର ସୁମଧୁର ସଙ୍ଗୀତ ଶୁଣି ସେ ସଙ୍ଗୀତମୟ ପ୍ରାଣରେ ନିଜେ ଗୀତ ଗାଏ । ସେ ସଙ୍ଗୀତର ତୁଳନା ଜଗତରେ ବିରଳ । ତାହା ମନ୍ଦାକିନୀର ସ୍ୱଚ୍ଛ ସ୍ରୋତ ସଦୃଶ ଆକାଶବକ୍ଷରେ ମୃଦୁମନ୍ଦ ଭାବରେ ନୃତ୍ୟ କରେ ।

ଆଜି ଜ୍ୟେଷ୍ଠ ପୂର୍ଣ୍ଣିମା । ପୂର୍ଣ୍ଣଚନ୍ଦ୍ର ପ୍ରାଚୀଲଲାଟରେ ଚନ୍ଦନ ବିନ୍ଦୁରୂପେ ବିରାଜିତ ହୋଇ ସୁଧାମୟ ଜ୍ୟୋତ୍ସ୍ନାରେ ଜଗତକୁ ସିକ୍ତ କରନ୍ତୁନ୍ତି । ଆକାଶର ସ୍ଥାନେ ସ୍ଥାନେ କ୍ଷୁଦ୍ର କ୍ଷୁଦ୍ର ମେଘଖଣ୍ଡ । ନଭଃପ୍ରାଙ୍ଗଣରେ ଚନ୍ଦ୍ର ଏହି ମେଘଗୁଡ଼ିକ ସଙ୍ଗେ ଲୁଚକାଳି ଖେଳ ଖେଳୁଅଛି । ଏପରି ଆନନ୍ଦ ଓ ହରାନନ୍ଦର ସନ୍ଧି

ସମୟରେ ଏ ନିର୍ଜନ ସ୍ଥଳରେ ବିମଳା ନୀଳମାଧବ ମନ୍ଦିରରୁ ବହିର୍ଗତ ହୋଇ ସୋପାନାବଳୀ ଉପରେ ଯାଇ ବସିଲା । ବିମଳାର ବୟସ ପ୍ରାୟ ଚଉଦ ବର୍ଷ ହେବ । ପରିଧେୟ ଗୋଟିଏ ନୀଳରଙ୍ଗର ଶାଢ଼ି, ନାସିକାରେ ଦଣ୍ଡୀ ଏବଂ ହସ୍ତରେ ସ୍ୱର୍ଣ୍ଣବଳୟ । ତାହାର କାନ୍ତି ଚମ୍ପକପୁଷ୍ପ ସଦୃଶ, ବେଣୀ ଅସଂଯତ । ନୈଶ ସମୀର ବିମଳାର କପୋଳନ୍ୟସ୍ତ ଅଳକ ସଙ୍ଗେ ନୃତ୍ୟ କରି ତାହାର ମୁଖକୁ ମେଘଦ୍ୱାରା ଅର୍ଦ୍ଧଲୁକ୍କାୟିତ ଚନ୍ଦ୍ରମାର କାନ୍ତିରେ ବିଭୂଷିତ କରୁଅଛୁ । ବିମଳାର ମନ ଆଜି ଚିନ୍ତାମଗ୍ନ, ମୁଖ ଗମ୍ଭୀର । ସେ ଯେପରି କାହାକୁ ଖୋଜୁଛି, କିନ୍ତୁ ପାଉନାହିଁ । ସେ ହସ୍ତୋପରି ଗଣ୍ଡଦେଶ ନ୍ୟସ୍ତ କରି ଆକାଶର ଚନ୍ଦ୍ର ଆଡ଼କୁ ଅନାଇଲା । ଚନ୍ଦ୍ରର ଲୁଚକାଳି ଖେଳ ଦେଖି ମନମଧ୍ୟରେ କଣ ଭାବି ଗୀତ ଗାଇବାକୁ ଲାଗିଲା—

କର କିପାଁ ପ୍ରବଞ୍ଚନା ?

ଅହେ ଶଶଧର ସୁଧାର ଆକର ଶୁଣ ବାରେ ମୋ ପ୍ରାର୍ଥନା ।
ସରୋବର ବକ୍ଷେ ନୀର-ଆସନେ
ଖେଳେ କୁମୁଦିନୀ ମନ୍ଦ ପବନେ,
ଲୁଚକାଳି ଖେଳେ ମାତି ଅବହେଳେ ଦେଉଛ କିପାଁ ଯାତନା ॥

ତବ ଆଲିଙ୍ଗନ ସୁଧାନିର୍ଝର
ଅଟେ କୁମୁଦିନୀ ହୃଦସମ୍ବଳ,
କାଦମ୍ବିନୀ କୋଳେ ଲୁଚି ଅନ୍ତରାଳେ ନ ଲୁଚିଅ ସେ କୋଛନା ॥

କହୁଛି ମିନତି, କୁମୁଦବନ୍ଧୁ
ଦେଖାଅ ନିର୍ମଳେ ବଦନ ମଧୁ,
ସୁଧା-ପାରାବାରେ ଭାସି ପ୍ରେମଭରେ ଲଭିବ ଧନୀ ସାନ୍ତ୍ୱନା ॥

ସ୍ୱରଲହରୀ ବନ୍ଦ ହେଲା, କିନ୍ତୁ ବିମଳାର ପ୍ରାଣ ଅଧୁନା ସଙ୍ଗୀତମୟ । ସଙ୍ଗୀତ ବନ୍ଦ ହେଲେ ସୁଦ୍ଧା ଜଗତ ତାକୁ ସଙ୍ଗୀତମୟ ଦିଶିବାକୁ ଲାଗିଲା । ରଜନୀର ନିସ୍ତବ୍ଧତା କେଉଁଆଡ଼େ ଉଭେଇଗଲା । ଜଗତର ଅଜ୍ଞାତରେ, ନିସ୍ତବ୍ଧତାର ଅଜ୍ଞାତରେ ଧରଣୀବକ୍ଷରେ ସୁମଧୁର ସଙ୍ଗୀତରାଜ୍ୟ ପ୍ରତିଷ୍ଠିତ ହେଲା ।

ବିମଳା ଆବେଗରେ, ଉଚ୍ଛ୍ୱାସରେ ଆତ୍ମବିସ୍ମୃତ ହୋଇ ନିର୍ବାକ୍ଷ୍ଟିରେ ମହାନଦୀ ବକ୍ଷରେ ଜ୍ୟୋତ୍ସ୍ନାର ସୁମଧୁର ଲାସ୍ୟ ଦେଖିବାକୁ ଲାଗିଲା । କିନ୍ତୁ ଏ କଣ ? ତା ମନ ଏପରି ଚଞ୍ଚଳ କାହିଁକି ? ଏ କାହାର ପଦ ଶବ୍ଦ ? ଏ କାହାର

ଉଷ୍ଣ ନିଶ୍ୱାସ ? ବିମଳା ପଛକୁ ଫେରି ଅନାଇଲା । କି ସୁନ୍ଦର ଯୁବାମୂର୍ତ୍ତି ଯେପରି ନୀଳ ବ୍ୟୋମପଟରେ ଚିତ୍ରିତ ତରୁଣ ଅରୁଣ ମୂର୍ତ୍ତି ! ସେ ମୂର୍ତ୍ତି ଦେଖି ବିମଳା ମୁଗ୍‌ଧ ହୋଇଗଲା । ତାହାର ନୟନ ସମକ୍ଷରେ ଯେପରି ସୌନ୍ଦର୍ଯ୍ୟଭଣ୍ଡାରର ସର୍ବଶ୍ରେଷ୍ଠ ମଣି ପ୍ରତିଭାତ ହେଲା । ସେ ଯୁବକଙ୍କ ନିକଟକୁ ଯାଇ କମ୍ପିତ କଣ୍ଠରେ କହିଲା, "ଆଜିଯାଏ ତୁମର ଶାରୀରିକ ଦୁର୍ବଳତା ଯାଇନାହିଁ । ତା ପରେ ପୁଣି ଏତେ ପରିଶ୍ରମ । ମୋ ରାଣ, ଦେହରେ ବଳ ହେବାଯାଏ ଅନ୍ଧ ରାତିରେ ଏପରି ବୁଲ ନାହିଁ ।"

ବିମଳାର କଥା ଶୁଣି ଯୁବକର ସମସ୍ତ ଶରୀର କଣ୍ଟକିତ ହୋଇଗଲା । ବିମଳାର ଅଜ୍ଞାତରେ ତାଙ୍କର ନୟନକୋଣରେ ସ୍ୱଚ୍ଛ ଅଶ୍ରୁକଣା ବିଲୀନ ହୋଇଗଲା । ସେ ତାହାର ହସ୍ତ ଧରି କହିଲେ, "କାହିଁକି ବିମଳା ! ମୋର ଦେହ ତ ବେଶ ସବଳ ହେଲାଣି । ଆଜି ସଞ୍ଜବେଳେ ମହାନଦୀ ଆରପାରିରେ ଗୋଟିଏ ନିଆଁହୁଳା ଦେଖାଯାଉଥିଲା । ସେଠାକୁ ଯାଇ ଦେଖେ ଯେ ମରହଟ୍ଟାମାନେ ଦଳବଳ ବାନ୍ଧି ଆସିଛନ୍ତି । ସେଦିନ ନାନାସାହେବ ଭେଁସ୍ଲା ଯେଉଁ ଅପମାନ ପାଇଥିଲେ, ତହିଁର ପ୍ରତିଶୋଧ ନେବାପାଇଁ ଏ ଆୟୋଜନ । ମୁଁ ଏକ୍ଷଣି ଦୁର୍ଗକୁ ଯାଇ ଏ ସମ୍ବାଦ ଦେବି ।"

ଯୁବକ ନୀରବ ହେଲେ । ଯୁବତୀଠାରୁ ଉତ୍ତର ପ୍ରତ୍ୟାଶା କରି ତା' ମୁହଁକୁ ଅନାଇବାକୁ ଲାଗିଲେ । ଅଶ୍ରୁସିକ୍ତଲୋଚନା ବିମଳା ରୁଦ୍ଧ କଣ୍ଠରେ କହିଲା, "କିନ୍ତୁ ତୁମ ଦେହ ଯେ ଭଲ ହୋଇନାହିଁ ।"

ଯୁବକ କହିଲେ, "ଦେହପାଇଁ ଏତେ ଚିନ୍ତା କାହିଁକି ? ଯଦି ଦରକାର ହୁଏ, ମୁକ୍ତିକ୍ଷେତ୍ରକୁ ଯିବାକୁ ହେବ ।

ବିମଳାର ଜ୍ୟୋତ୍ସ୍ନା-ପ୍ରତିଫଳିତ ଅଶ୍ରୁସିକ୍ତ ଗଣ୍ଡ ପ୍ରତି ଯୁବକଙ୍କ ଦୃଷ୍ଟି ପଡ଼ିଲା । ତାଙ୍କ ହସ୍ତ ଶିଥିଳ ହୋଇଗଲା । ସେ ଆଉ ବିମଳାର ହସ୍ତ ଧରି ପାରିଲେ ନାହିଁ । ବିମଳା ନୀରବରେ କ୍ରନ୍ଦନ କରିବାକୁ ଲାଗିଲା । ଏ ସମୟରେ ଯଦି ଆକାଶର ତାରକାଖଚିତ ପୁରୁ ଚନ୍ଦ୍ରାତପ ଖସିଯାଇ ଯୁବକଙ୍କ ମସ୍ତକ ଉପରେ ପଡ଼ିଥାନ୍ତା, ତାହାହେଲେ ସେ କ୍ଷଣେମାତ୍ର ଦୁଃଖିତ ହୋଇ ନ ଥାନ୍ତେ । କିନ୍ତୁ ବିମଳାର ହୃଦୟର ଆବେଗ ଦେଖି ସେ ଅଉ ସମ୍ଭାଳି

ପାରିଲେ ନାହିଁ । ତାଙ୍କ ଚକ୍ଷୁ ମଧ୍ୟ କ୍ରୋଧରକ୍ତପୂର୍ଣ୍ଣ ହୋଇଗଲା । ପରେ ବଡ଼ କଷ୍ଟରେ ଆତ୍ମସଂଗୋପନ କରି କହିଲେ, "ତୁ ବିମଳା, ଦେଶର ଶତ୍ରୁକୁ ଦାଣ୍ଡଦୁଆରେ ଦେଖି ଏପରି କଥା କହୁଛ ।"

ବିମଳା ମସ୍ତିଷ୍କ ଉତ୍ତୋଳନ କରି ସ୍ଥିର ଦୃଷ୍ଟିରେ ଯୁବକଙ୍କ ମୁଖକୁ ଅନାଇଲା । ତାହାର ମୁଖର ରଙ୍ଗ ଅଧୁନା ପରିବର୍ତ୍ତିତ—ନୟନ ଅଶ୍ରୁସିକ୍ତ । ସେ ଯୁବକଙ୍କ ହସ୍ତକୁ ବାରମ୍ବାର ଚୁମ୍ବନ କରି କହିଲା, "ଦେଶର କାର୍ଯ୍ୟ—ଦେବତାଙ୍କ କାର୍ଯ୍ୟ—ମୁଁ ବାଧା ଦେବ ନାହିଁ—ଯାଅ । କିନ୍ତୁ..."

ବିମଳାର କଣ୍ଠରୁଦ୍ଧ ହୋଇଗଲା । ତା' ମୁଖରୁ ଆଉ କଥା ବାହାରି ପାରିଲା ନାହିଁ । ଯୁବକ ସହାସ୍ୟ ବଦନରେ କହିଲେ ଯଦି ଈଶ୍ୱରଙ୍କ ଇଚ୍ଛା ହୁଏ, ନିଶ୍ଚୟ ଦେଖାହେବ ।" ଏହା କହି ସେ ବିମଳାଠାରୁ ବିଦାୟ ନେଇ ବୃକ୍ଷାନ୍ତରାଳରେ ଅଦୃଶ୍ୟ ହୋଇଗଲେ ।

## ଦ୍ୱିତୀୟ ପରିଚ୍ଛେଦ ବିଶ୍ୱାସଘାତକ

"I give him curses, yet he gives me love.
—Shakespeare

"ଏତେ ରାତ୍ରିରେ ନିର୍ଜନରେ ପରପୁରୁଷ ସଙ୍ଗେ ତୁ, ବିମଳା ।"

ବିମଳା ପଛକୁ ଅନାଇ ଦେଖିଲା, ଆଉ ଜଣେ ଯୁବକ ଠିଆ ହୋଇ ତାକୁ ଏପରି କହୁଛନ୍ତି । ଯୁବକଙ୍କୁ ଚିହ୍ନିବାପାଇଁ ବିମଳାର ବେଶି ବିଳମ୍ବ ହେଲା ନାହିଁ । ସେ ଶୈଶବରୁ ପିତୃମାତୃହୀନା । ସମ୍ବଲପୁର ରାଜ୍ୟର ସ୍ୱାଧୀନ ନରପତି ଜୟନ୍ତ ସିଂହଙ୍କର ସେନାପତି ବୀରେଶ୍ୱର ସିଂହଙ୍କର ଲାଳନ ପାଳନରେ ବର୍ଦ୍ଧିତା ହୋଇ ଭକ୍ତିଭାଜନ ପିତା ଏବଂ ସ୍ନେହମୟୀ ମାତାଙ୍କୁ ପୁଣି ଭୁଲିଯାଇଥିଲା । ବୀରେଶ୍ୱର ତାହାର ପିତା ଓ ମାତା ଦୁହିଁଙ୍କ ସ୍ଥାନ ଅଧିକାର କରିଥିଲେ । ସେ ତାକୁ ନିଜ ଝିଅରୁ ବଳି ସ୍ନେହ କରୁଥିଲେ । ବିମଳା ମଧ୍ୟ ବୀରେଶ୍ୱରଙ୍କ ପରିବାରକୁ ନିଜ ପରିବାର ବୋଲି ଭାବୁଥିଲା । ବୀରେଶ୍ୱରଙ୍କର ଏକମାତ୍ର ପୁତ୍ର ଉଦୟପ୍ରତାପ ସିଂହଙ୍କୁ ସେ ନିଜ ଅଗ୍ରଜପ୍ରାୟେ ଭକ୍ତି କରୁଥିଲା ।

ଉଦ୍ଧତପ୍ରତାପଙ୍କ କଥା ଶୁଣି ତାଙ୍କ ନିକଟକୁ ଯାଇ କହିଲା, "ଦାଦା, ବାପା ତ କହୁଛନ୍ତି, ରାତିରେ କେବେ ଉପର ଏଠାକୁ ଆସୁଥିବୁ ବୋଲି । ମୋ ମନରେ କଷ୍ଟ ଥିଲେ ମୁଁ ଏଠାକୁ ଆସି ଗୀତ ଗାଏ—ଗୀତ ଗାଇ ଗାଇ ତାପିତ ପ୍ରାଣକୁ ଶୀତଳ କରେ । ତୋ ଦୁଃଖିନୀ ଭଉଣୀ ଉପରେ କାହିଁକି ରାଗୁଛୁ ?"

"କିନ୍ତୁ ପରପୁରୁଷ ସଙ୍ଗେ !" ଏହା କହି ଉଦ୍ଧତପ୍ରତାପ ଜିଭ କାମୁଡ଼ି ବିମଳାର ମୁହଁ ଆଡ଼କୁ ଅନାଇଲେ । ଲଜ୍ଜାରେ ବିମଳାର ମୁଖ ତଳକୁ ହୋଇଗଲା । ଉଦ୍ଧତପ୍ରତାପ ପୁନରାୟ କହିଲେ, 'ବିମଳା ! ତୋ ପିଲାଳିଆ ସ୍ୱଭାବ କେବେ ଛାଡ଼ିଲୁ ନାହିଁ । ତୁ ବଡ଼ ହେଲଣି, ସଂସାରର ଗତିବିଧି ସବୁ ଦେଖୁଛୁ । ତୋର ଏ ବୟସରେ ଅନ୍ୟ ଲୋକ ସଙ୍ଗେ ନିର୍ଜ୍ଜନରେ କଥାବାର୍ତ୍ତା କରିବା ଠିକ୍ ନୁହେଁ ।"

"କିନ୍ତୁ ପ୍ରସନ୍ନକୁମାର ଯେ ମୋର ପିଲାକାଳର ସଙ୍ଗୀ । ତାଙ୍କ ସଙ୍ଗେ ଏକାନ୍ତରେ କଥାବାର୍ତ୍ତା କଲେ ଦୋଷ କଣ ?"

"ସେ ତୋର ପିଲାକାଳ ସାଥୀ ହୋଇପାରନ୍ତି । ପିଲାବେଳେ ସେ ସବୁ ଶୋଭା ପାଉଥିଲା । ଆଜି ତୋର ଏ ଆଚରଣ ଶୁଣିଲେ ବାପା କଣ କହିବେ ?"

"ଛି, ଦାଦା ! ତୁ କ୍ଷତ୍ରିୟ ଯୁବକ ହୋଇ ଏପରି କହୁଛୁ ?"

"ନା ବିମଳା, ତୁ ଏପରି କଲେ ମୋ ମନରେ କଷ୍ଟ ହେବ । ପ୍ରସନ୍ନକୁମାରଙ୍କ ଚରିତ୍ର ଭଲ ନୁହେଁ । ଅଧମଚରିତ୍ର ଲୋକଙ୍କ ସଙ୍ଗେ ତତେ ଦେଖିଲେ ମୁଁ ରାଗିବି ।"

ପ୍ରସନ୍ନକୁମାର ବିମଳାର ଅନ୍ତରଙ୍ଗ ପ୍ରତିବେଶୀ । ପିଲାଦିନରୁ ଦୁହେଁଯାକ ଏକାସାଙ୍ଗରେ ଖେଳୁଥିଲେ—ଦୁହେଁ ଦୁହିଁଙ୍କ ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହେଉଥିଲେ । ଦୁହେଁ ଗୋଟିଏ ବୃନ୍ତର ଯୁଗଳ ପୁଷ୍ପ ସଦୃଶ ଶୋଭା ପାଉଥିଲେ । ଦୁହିଁଙ୍କ ପ୍ରାଣ ଏକ, ମନ ଏକ । ପ୍ରସନ୍ନକୁମାରଙ୍କ ନିନ୍ଦା ଶୁଣି ବିମଳା ମନରେ କଷ୍ଟ ହେଲା । ସେ ଉଦ୍ଧତପ୍ରତାପଙ୍କ ଉଦ୍ଦେଶ୍ୟ ବୁଝିପାରିଲା । ଉଦ୍ଧତପ୍ରତାପ ବିମଳାର ସୌନ୍ଦର୍ଯ୍ୟମୁଗ୍ଧ, ତା'ର ପ୍ରଣୟପ୍ରାର୍ଥୀ । ବିମଳା ତାଙ୍କୁ ଅନେକ ଥର ବୁଝାଇ କହିଥିଲା—ତାଙ୍କୁ ଭଗିନୀର ସ୍ନେହ, ଦୟା, ଭକ୍ତି ଅର୍ପଣ କରିଥିଲା । କିନ୍ତୁ ଉଦ୍ଧତପ୍ରତାପ ତହିଁରେ ସନ୍ତୁଷ୍ଟ ନ ହୋଇ ତା' ହୃଦୟରାଜ୍ୟର ରାଜା ହେବାକୁ

ଇଚ୍ଛା କରିଥିଲେ । ତାଙ୍କ ଅଭିଳାଷ ସିଦ୍ଧି ପଥରେ ପ୍ରସନ୍ନକୁମାରଙ୍କୁ ପ୍ରଧାନ ଅନ୍ତରାୟ ଭାବି ତାଙ୍କ ବିରୁଦ୍ଧରେ ନାନା ମିଥ୍ୟାପବାଦ ରଚନା କରି ବିମଳା ସଙ୍ଗେ ତାଙ୍କ ଦେଖା-ସାକ୍ଷାତ୍ ବନ୍ଦ କରିଦେଲେ । ଦଗ୍ଧହୃଦୟା ବିମଳା ମନ୍ଦିରକୁ ପ୍ରତିଦିନ ଗୀତ ଗାଇବା ଛଳରେ ଆସି ପ୍ରସନ୍ନକୁମାରଙ୍କ ସଙ୍ଗେ ଦେଖାକରିଯାଏ । ଏ କଥା ମଧ୍ୟ ଉଦ୍ଧତପ୍ରତାପଙ୍କୁ ଅସହ୍ୟ ହୋଇପଡ଼ିଲା । ସେମାନଙ୍କର ସେ ମଧୁର ଆଳାପ, ପରସ୍ପର ହୃଦୟଦ୍ୱାର ଉଦ୍‌ଘାଟନ ବନ୍ଦ କରିବା ସକାଶେ ସେ ଚେଷ୍ଟା କରିବାକୁ ଲାଗିଲେ । ଆଜି ତାଙ୍କ ମୁହଁରୁ ଏ ଅସଙ୍ଗତ, ଅସଂଯତ କଥା ଶୁଣି ବିମଳା କହିଲା, "ଦାଦା, ମୁଁ ନାନା ଦୋଷରେ ଦୋଷୀ ହୋଇପାରେ; କିନ୍ତୁ ପ୍ରସନ୍ନକୁମାର ନିର୍ଦ୍ଦୋଷ—ମୁଁ ତାଙ୍କୁ ଭଲକରି ଜାଣେ । ଯଦି ମୋତେ ଭଉଣୀ ବୋଲି ସ୍ନେହ କରୁ, ଏପରି କଥା କେବେ କହିବୁ ନାହିଁ ।"

'ମୁଁ ପୁଣି କହୁଛି ପ୍ରସନ୍ନକୁମାର ଅସଚ୍ଚରିତ୍ର । ବାପା ମଧ୍ୟ ଏ କଥା ଜାଣନ୍ତି । ବାପାଙ୍କ ଆଦେଶମତେ ମୁଁ ଏଠାକୁ ଆସିଛି । ଆଉ ଏଣିକି ତୁ ଘରୁ ବାହାରି ପାରିବୁ ନାହିଁ ।"

ଉଦ୍ଧତପ୍ରତାପଙ୍କ କଥା ଶୁଣି ବିମଳା ଦଳିତା-ଫଣିନୀ ସଦୃଶ କ୍ରୋଧରେ ଜର୍ଜରିତ ହୋଇଗଲା । ସେ ତାଙ୍କ କଣ୍ଠ ଚିପିପାରିଲା । ଅବଳା ନାରୀ ତଳକୁ ମୁହଁ କରି କାନ୍ଦିବାକୁ ଲାଗିଲା । ବିମଳାର ଏ ଅବସ୍ଥା ଦେଖି ଉଦ୍ଧତପ୍ରତାପଙ୍କ ନୟନକୋଣରେ ଈଷତ୍ ଆନନ୍ଦ-ରେଖା ଫୁଟିଉଠିଲା । ତାଙ୍କ ଓଷ୍ଠ ପ୍ରାନ୍ତରେ କୁଟିଳ ହାସ୍ୟର ଜ୍ୟୋତି ପ୍ରକଟିତ ହୋଇ ପରମୁହୂର୍ତ୍ତରେ ବିଲୀନ ହୋଇଗଲା । ବିମଳାକୁ ଚତୁର୍ଦ୍ଦିଗ ଘୋର ତମସାଚ୍ଛନ୍ନ ପ୍ରତୀତ ହେଲା । ସେ କମ୍ପିତ କଣ୍ଠରେ କହିଲା, "ଦାଦା, ତୋର ଏସବୁ କୁଟ ବୃଥା । ମୁଁ ତତେ ଭଗିନୀର ସର୍ବସ୍ୱ ଅର୍ପଣ କରିସାରିଛି । ଏଥିରୁ ବେଶି ତୁ ଆଉ କିଛି ପାଇ ପାରିବୁ ନାହିଁ । ତୁ ମୋତେ ବାନ୍ଧିପାରୁ; କିନ୍ତୁ ମୋ ହୃଦୟକୁ ବାନ୍ଧି ପାରିବୁ ନାହିଁ । ଉପରେ ଈଶ୍ୱର ଅଛନ୍ତି ।'

ଏହା କହି ସେ ଦ୍ରୁତପଦକ୍ଷେପରେ ସେଠାରୁ ଚାଲିଗଲା । ବିମଳାର ଭାବ ଦେଖି ଉଦ୍ଧତପ୍ରତାପ ପ୍ରମାଦ ଗଣିଲେ । ପାଳିତା କନ୍ୟାର ପୁଣି ଏତେ ଦୂର ଆସ୍ପର୍ଦ୍ଧା ! ଝାରଖଣ୍ଡ ଛତ୍ରପତି ମହାରାଜଙ୍କ ସେନାପତି ପୁତ୍ରକୁ ଖାତିର କରେ ନାହିଁ । କ୍ରୋଧରେ ତାଙ୍କ ମୁଖ ଲାଲ ହୋଇଗଲା । ଦଶନରେ ଅଧର ଚିପି ବିମଳାର ଏ ଆଚରଣର ପ୍ରତିଶୋଧ ନେବା ନିମନ୍ତେ ସେ ବିମଳାର ଅନୁସରଣ କଲେ ।

## ତୃତୀୟ ପରିଚ୍ଛେଦ : କ୍ଷୁଦ୍ର ମେଘ

"ଶିଖରେ ପ୍ରତୀକ୍ଷା କରି ବନ୍ଧୁଜନ
ଶତ୍ରୁ ଯୋଗେ ହୋଇଛନ୍ତି ଧୈର୍ଯ୍ୟହୀନ,
ହୃଦ୍‌ଦେଶେ ବାନ୍ଧୁଛନ୍ତି ଦିବାକୁ ବାସନା-
କଣ୍ଠୁ କଢ଼ୁଛନ୍ତି ବଜନେ ମନ୍ତ୍ରଣା ।"

(କନକେଶ୍ୱରୀ)

ଏ କେତେଦିନ ହେଲା ବିମଳାର ମନରେ ଜମା ସୁଖ ନାହିଁ । ଉଦିତପ୍ରତାପଙ୍କ କଣ୍ଠସ୍ୱର—"ତୁ ଆଉ ଘରୁ ବାହାରି ପାରିବୁ ନାହିଁ" ସର୍ବଦା କର୍ଣ୍ଣକୁହରରେ ପ୍ରତିଧ୍ୱନିତ ହେଉଅଛି । କି—ସରଳା ବାଳିକାର ସ୍ୱାଧୀନ ମତ ଉପରେ ଏ ଅତ୍ୟାଚାର ! ବିମଳା ଉଦିତପ୍ରତାପଙ୍କୁ ସ୍ପଷ୍ଟରୂପେ କହିଅଛି ଯେ ସେ ତାଙ୍କ ପ୍ରଣୟାକାଙ୍କ୍ଷିଣୀ ନୁହେଁ । ତଥାପି ତାକୁ ଶୃଙ୍ଖଳିତ କରିବାପାଇଁ ଏ ପ୍ରୟାସ କାହିଁକି ?

ପୂର୍ବେ ବିମଳା ନିଜ ହସ୍ତରେ ସବୁ ଗୃହକର୍ମ କରୁଥାଏ । କିନ୍ତୁ ଆଉ ଏଣିକି ସେ ଆଡ଼କୁ ଜମା ମନ ଗଲା ନାହିଁ । ତାହାର ମାନସ-ଚକ୍ଷୁ ସମକ୍ଷରେ ପ୍ରସନ୍ନକୁମାରଙ୍କ ପ୍ରେମମୟୀ ପ୍ରତିମା ଅହରହ ନୃତ୍ୟ କରିବାକୁ ଲାଗିଲା । ସେ ତାଙ୍କୁ ଛାଡ଼ି କିପରି ଆଉ ଅନ୍ୟ ବିଷୟ ଭାବିପାରିବ ? ତାରି ବିମଳା ପ୍ରେମର ପ୍ରବଳ ବନ୍ୟାରେ ଶତ ଉଦିତପ୍ରତାପ ବାଲିବନ୍ଧ ପ୍ରାୟ ଭାସିଯିବେ ।

ପ୍ରଥମେ ପ୍ରଥମେ ବିମଳା ମନଦୁଃଖରେ ଘରକଣରେ ବସି ଭାବନା କରୁଥାଏ । ଭାବି ଭାବି ଲୋତକରେ ଗଣ୍ଡଦେଶ ସିକ୍ତ କରେ । ଭୋଜନରେ କିମ୍ବା ଶୟନରେ ତା'ର ଆଉ ଆସ୍ଥା ନାହିଁ । ଶରୀର ଦିନକୁ ଦିନ କୃଶ ହୋଇଗଲାଣି । ତାହାର ଶାରୀରିକ ଓ ମାନସିକ ପରିବର୍ତ୍ତନ ଦେଖି ପରିବାରସ୍ଥ ସମସ୍ତେ ଚିନ୍ତାକୁଳ ହୋଇପଡ଼ିଲେ । ତାକୁ ସାନ୍ତ୍ୱନା ଦେବା ନିମନ୍ତେ ଅନେକ ଯତ୍ନ କଲେ; କିନ୍ତୁ ସେମାନଙ୍କ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ଗୃହ ବର୍ତ୍ତମାନ ତାହା ପକ୍ଷରେ କାରାଗାର । ଏ କାରାଗାରରୁ ମୁକ୍ତି ପାଇଲେ ରକ୍ଷା ।

କିଛିଦିନ ପରେ ଅକସ୍ମାତ୍ ରାଷ୍ଟ୍ର ହେଲା ଯେ ବିମଳା ନିରୁଦ୍ଦିଷ୍ଟା ହୋଇଛି । ସେ କେଉଁଠିକି ଗଲା, କେହି ଜାଣନ୍ତି ନାହିଁ । ତାକୁ ଖୋଜିବା ପାଇଁ ବୀରେଶ୍ୱର ଚାରିଆଡ଼କୁ ଲୋକ ପଠାଇଲେ; କିନ୍ତୁ ବିମଳାର ସନ୍ଧାନ ମିଳିଲା ନାହିଁ । ରାଜ୍ୟସାରା ଚାରିଆଡ଼େ ଚହଳ ପଡ଼ିଗଲା । ସମସ୍ତଙ୍କ ମୁଖରେ ବିଷାଦର କାଳିମା ବୀରେଶ୍ୱରଙ୍କୁ ଆଉ କିଛି ଭଲ ଲାଗୁନାହିଁ । ସଂସାର ତାଙ୍କୁ ବିଷମୟ ପ୍ରତୀତ ହେଉଛି । ବିମଳା ବିଷୟରେ ଅନେକ ଲୋକ ଅନେକ କଥା କହୁଛନ୍ତି । କିଏ କହେ ବିମଳା ପାଣିରେ ବୁଡ଼ି ମରିଛି । ତାହାର ମତ ସମର୍ଥନ କରିବା ସକାଶେ କେହି କହେ ଯେ ସେ ବିମଳାର ମୃତ ଦେହ ଦେଖିଛି । ଏପରି ନାନା ମୁଖରେ ନାନା କଥା ଶୁଣାଗଲା ।

ଏ ସମ୍ବାଦ ଯାଇ ଉଦ୍ଧତପ୍ରତାପଙ୍କ କାନରେ ପଡ଼ିଲା । ସେ ଅଧୁନା ସମ୍ବଲପୁର ଦୁର୍ଗରେ ଯାଇ ମରହଟ୍ଟାମାନଙ୍କ ସଙ୍ଗେ ଭୀଷଣ ଯୁଦ୍ଧରେ ପ୍ରବୃତ୍ତ ଅଛନ୍ତି । କ୍ରମାନ୍ୱୟ ଛ'ମାସ କାଳ ମରହଟ୍ଟାମାନେ ଦୁର୍ଗ ଅଧିକାର କରିବାକୁ ଚେଷ୍ଟା କଲେ, କିନ୍ତୁ ଓଡ଼ିଆମାନଙ୍କ ବୀରତ୍ୱ ସମ୍ଭାଳି ନ ପାରି ପ୍ରତିଥର ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ । * ଦୁର୍ଗ ମଧ୍ୟରେ ଆଦୌ ପ୍ରବେଶ କରିପାରିଲେ ନାହିଁ ।

ଏଣେ ଉଦ୍ଧତପ୍ରତାପଙ୍କର ପୂର୍ବପରି ଉତ୍ସାହ ନାହିଁ । ଯୁଦ୍ଧ କରିବାକୁ ତାଙ୍କୁ ଆଉ ଭଲ ଲାଗୁନାହିଁ । ତାଙ୍କର ଏପରି ଭାବ ଦେଖି ପ୍ରସନ୍ନକୁମାର ବ୍ୟଥିତ ହେଲେ । ଈର୍ଷାପରବଶ ହୋଇ ଉଦ୍ଧତପ୍ରତାପ ସମରାଙ୍ଗଣରେ ପ୍ରସନ୍ନକୁମାରଙ୍କ କ୍ଷତି କରିବାକୁ ଚେଷ୍ଟା କରିଥିଲେ, କିନ୍ତୁ ଭଗବାନ ଏ ବିପଦରୁ ରକ୍ଷା କଲେ । ପ୍ରସନ୍ନକୁମାର ଏପରି ଦକ୍ଷତା ସହକାରେ ଯୁଦ୍ଧ କରିବାକୁ ଲାଗିଲେ ଯେ ଜୟନ୍ତ ସିଂହ ତାଙ୍କର ରଣକୌଶଳରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କୁ ତୋରଣରକ୍ଷୀ ସୈନିକମାନଙ୍କ ଅଧିନାୟକ ପଦରେ ନିଯୁକ୍ତ କଲେ । ଏ ଗୁରୁଦାୟିତ୍ୱ ମସ୍ତକରେ ବହନ କରି ସଂସାରର ସମସ୍ତ ଚିନ୍ତା ଭୁଲି ପ୍ରସନ୍ନକୁମାର କର୍ତ୍ତବ୍ୟ ପଥରେ ଅଗ୍ରସର ହେଲେ ।

କିନ୍ତୁ ପ୍ରସନ୍ନକୁମାରଙ୍କ ଉନ୍ନତି ଉଦ୍ଧତପ୍ରତାପଙ୍କୁ ଭଲ ଲାଗିଲା ନାହିଁ । ପ୍ରସନ୍ନକୁମାରଙ୍କୁ ଦେଖିଲେ, କେଜାଣି କାହିଁକି, ତାଙ୍କ ମୁହଁ କ୍ରୋଧରେ ଲାଲ

---

* Vide Bengal District Gazetteer,
(Sambalpur)

ହୋଇଯାଏ । ତାଙ୍କ ଚକ୍ଷୁରୁ ଅଗ୍ନି-ସ୍ଫୁଲିଙ୍ଗ ନିର୍ଗତ ହୁଏ । ଯେଉଁଦିନ ଉଦିତ ପ୍ରତାପ ବମଲାର କଳୁଷିତ ହେବାର ସମ୍ବାଦ ଶୁଣିଲେ, ସେହିଦିନ ତାଙ୍କର ମୁଖ ଗମ୍ଭୀର ହୋଇଗଲା, ଯେପରି ସେ ସବୁବେଳେ କଣ ଚିନ୍ତା କରୁଛନ୍ତି । ରଙ୍ଗ-କୋଳାହଳ ଆଉ ତାଙ୍କ ପ୍ରାଣକୁ ନଚାଇ ପାରିଲା ନାହିଁ । ସେ ନୀରବରେ ନିର୍ଜନରେ ବସି ଚିନ୍ତା କରିବାକୁ ଲାଗିଲେ ।

କିଛିଦିନ ପରେ ପୁଣି ଦୁର୍ଗ ଭିତରେ ହୁଲି ପଡ଼ିଗଲା, ଉଦିତପ୍ରତାପ ଦୁର୍ଗରେ ନାହାନ୍ତି । ସରଳ-ହୃଦୟ ପ୍ରଦ୍ୟୁମ୍ନକୁମାର ଏଥିର କାରଣ କିଛି ବୁଝି ପାରିଲେ ନାହିଁ । ମୃତ୍ୟୁ ସମୟରେ ସେନାପତିପୁତ୍ରଙ୍କ ଈଦୃଶ ଆଚରଣ ଦେଖି ସମସ୍ତେ ବ୍ୟଥିତ ହେଲେ । କିନ୍ତୁ ଜଗତର ଦୁଃଖ ହେଉ ବା ସୁଖ ହେଉ, ସମସ୍ତେ ନିଜ ନିଜ କାର୍ଯ୍ୟ ନେଇ ବ୍ୟସ୍ତ । ମନୁଷ୍ୟ ଦେବତା ନୁହେଁ—ସମୟେ ସମୟେ ହେବାକୁ ଚେଷ୍ଟା କରୁଥାଏ ମାତ୍ର । ସଂସାରରେ ଏହି ଦେବତ୍ୱାଭିଳାଷୀ ମନୁଷ୍ୟଙ୍କ ସଂଖ୍ୟା ନିତାନ୍ତ କମ୍—ନାହିଁ କହିଲେ ଚଳେ । ପ୍ରକାଶ୍ୟରେ ହେଉ ବା ଗୋପନରେ ହେଉ, ସଭିଏ ନିଜ ନିଜ ସ୍ୱାର୍ଥରେ ମାତିଛନ୍ତି । ଯେଉଁମାନେ ଏହି ନିୟମର ବହିର୍ଭୂତ, ସେମାନେ ନମସ୍କରଣୀୟ ।

ଓଡ଼ିଆମାନଙ୍କ ହସ୍ତରେ ବାରମ୍ବାର ପରାସ୍ତ ହୋଇ ମରହଟ୍ଟମାନେ ଅତିଶୟ କାତର ହୋଇପଡ଼ିଥିଲେ । ଓଡ଼ିଶାକୁ ଜୟ କରିବା ସେମାନେ ଯେପରି ସହଜ ବୋଲି ଭାବିଥିଲେ, କାର୍ଯ୍ୟରେ ତହିଁର ଠିକ୍ ବିପରୀତ ଦେଖିବାକୁ ପାଇଲେ । ସ୍ୱାଧୀନ ଜାତିକୁ ପରାଧୀନ କରିବା ସହଜ କଥା ନୁହେଁ ।

ସମ୍ବଲପୁରାଧିପତି ଅଭୟ ସିଂହଙ୍କ ହସ୍ତରେ ମରହଟ୍ଟାମାନେ ଯେଉଁ ପରାଜୟ ସ୍ୱୀକାର କରିଥିଲେ, ତହିଁର ଯନ୍ତ୍ରଣା ଆଜିଯାଏ ଯାଇନାହିଁ । ତା'ପରେ ପୁଣି ଜୟନ୍ତ ସିଂହଙ୍କ ହସ୍ତରେ ଏ ଅପମାନ ! ନାନାସାହେବ ଭୋଁସ୍ଲା* ଏପରି ଅବସ୍ଥାରେ କଣ କରିବେ, କିଛି ଠିକ କରିପାରିଲେ ନାହିଁ । ସମସ୍ତ ସାମନ୍ତମାନଙ୍କୁ ଏକତ୍ରିତ କରି ସେ ମନ୍ତ୍ରଣା କରିବାକୁ ଲାଗିଲେ । ଦୁର୍ଗକୁ ଅଧିକାର କରିବାର ଅନେକ ଉପାୟ ଉଦ୍ଭାବିତ ହେଲା, କିନ୍ତୁ ସେଗୁଡ଼ିକ ଅସମ୍ଭବ ଜ୍ଞାନରେ ପରିତ୍ୟକ୍ତ ହେଲା । ମରହଟ୍ଟା ଶିବିରରେ ବିଷାଦର ରାଜ୍ୟ ପ୍ରତିଷ୍ଠିତ ହେଲା ।

* ନାଗପୁରାଧିପତି ରଘୁଜୀ ଭୋଁସ୍ଲାଙ୍କ ଭାଇ ।

ନାନାସାହେବ ଚନ୍ଦ୍ରାଳୋକ ମନ୍ଦିରେ ଶିବିର ପରିତ୍ୟାଗ କରି ମହାନଦୀ କୂଳରେ ବିଚରଣ କରିବାକୁ ଲାଗିଲେ । ଜ୍ୟୋତ୍ସ୍ନାସ୍ନାତ ଲହଣ୍ଡା ପର୍ବତର ଦୂର୍ଗାଦ୍ରି କାନ୍ତି ତାହାଙ୍କର ଦୃଷ୍ଟି ପଥାରୂଢ ହେଲା । କି ଅଲୌକିକ ସୌନ୍ଦର୍ଯ୍ୟ ସମ୍ପୁଟରେ ସୌନ୍ଦର୍ଯ୍ୟରେ କମ୍ପମାନା କଳନାଦିନୀ ପର୍ବତ-ସ୍ରୋତସ୍ୱତୀ । ମସ୍ତକରେ ନୀଳ ଆକାଶ, ସତେ ଯେପରି ଉପରୁ ନୀଳିମା ଥପଥପ ହୋଇ ପଡ଼ୁଛି । ନାନାସାହେବ ମୁଗ୍ଧ ନେତ୍ରରେ ଏ ଅପରୂପ ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲେ । କିନ୍ତୁ ପର ମୁହୂର୍ତ୍ତରେ ସବୁ ଅନ୍ଧକାର ହୋଇଗଲା । ପ୍ରକୃତିର ସେ ମଧୁର ଶିଳ୍ପ କେଉଁଆଡ଼େ ଉଭେଇଗଲା । ସେ ବିଷଣ୍ଣ ମନରେ ରୋଦନ କରିବାକୁ ଲାଗିଲେ ।

କିଛିକ୍ଷଣ ପରେ ଚକ୍ଷୁ ଉନ୍ମୀଳନ କରି ଦେଖିଲେ ଯେ ଜଣେ ଯୁବକ ମହାନଦୀବକ୍ଷରେ ଶିଳା ଉପରେ ବସିଛନ୍ତି । ଯୁବକଙ୍କ ପରିଚ୍ଛଦ ଦେଖି ତାଙ୍କୁ ଶତ୍ରୁପକ୍ଷୀୟ ଭାବି ଭୀଷଣ ଗର୍ଜନ ସହ ତାଙ୍କ ଉପରେ ଲମ୍ଫ ପ୍ରଦାନ କଲେ । କିନ୍ତୁ ଯୁବକ ପର୍ବତ ପ୍ରାୟ ଅଟଳ । ପ୍ରତ୍ୟାକ୍ରମଣରେ ଚେଷ୍ଟା ମାତ୍ର ବିରହିତ । ସେ ନାନାସାହେବଙ୍କ ଅଙ୍ଗକୁ ନୀରବରେ ଅଗ୍ରସର ହୋଇ ତାଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ଯୁବକଙ୍କର ଏପରି ଶକ୍ତି ଦେଖି ନାନାସାହେବ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେମାନଙ୍କ ମଧ୍ୟରେ ଅନେକ କଥାବାର୍ତ୍ତା ହେଲା ; କିନ୍ତୁ ସେ ଗୁପ୍ତ କଥାବାର୍ତ୍ତା କେହି ଶୁଣିନାହାନ୍ତି । ଏଣୁ ପାଠକମାନଙ୍କୁ ତାହା ଉପହାର ଦେଇ ନ ପାରି ଆମ୍ଭେମାନେ ଦୁଃଖିତ । କେବଳ ଲୋକଙ୍କ ମୁହଁରୁ ଶୁଣିଛୁଁ ଯେ ସେ ଯୁବକଙ୍କ ନାମ ଉଦିତପ୍ରତାପ ।

## ଚତୁର୍ଥ ପରିଚ୍ଛେଦ : ଘୋର ଅନ୍ଧକାର

"ଧନ୍ୟ ସେ ପ୍ରାଣିକା ମରଣ-ଭୀତିକା
ପ୍ରୀତି ସେ ପାରଇ ଜିଣି,"
ଶିରୀଷ-ମୃଦୁଳା ଲବଣୀ-ପିଚ୍ଛିଳା
ପ୍ରୀତି କଲା ସାହସିକା ।"

(କେଦାରଗୌରୀ)

"କିନ୍ତୁ ଏ ରକ୍ତପାତରେ ତୁମ୍ଭର ଲାଭ ?"

"ଲଭ ! ଦେଶର ଶତ୍ରୁକୁ ବିନାଶ କରି ଜନ୍ମଭୂମିର ସ୍ୱାଧୀନତା ରକ୍ଷା କରିବ । ଏହା କଣ କ୍ଷତ୍ରିୟସ୍ୱଭାବର ଚରମ ଲଭ ନୁହେଁ ?"

"ଏପରି ଭାବିବା ମୂର୍ଖତା ଭିନ୍ନ ଆଉ କିଛି ନୁହେଁ । ମରହଟ୍ଟାମାନେ ଚିର ବିଜୟୀ । ସେମାନଙ୍କ ସଙ୍ଗେ ଯୁଦ୍ଧ କରି ପରାଜିତ ହେବ । ବରଂ ସେମାନଙ୍କୁ ସାହାଯ୍ୟ କଲେ ଜମି-ଜାଗିର ପାଇ ବଡ଼ଲୋକ ହୋଇ ପାରିବ ।"

"ସେ କି ଉଦ୍ଧତପ୍ରତାପ ! ତୁମ ମୁହଁରେ ଏପରି କଥା ! କ୍ଷମା କରିବ । ମୁଁ ସେ କାର୍ଯ୍ୟ କରିପାରିବ ନାହିଁ । ଆଜି ପୃଥ୍ୱୀ ଧର୍ମ ଅଛି । ପୂର୍ବପରି ଆଜି ସୁଦ୍ଧା ଚନ୍ଦ୍ର ସୂର୍ଯ୍ୟ ଉଦିତ ହେଉଛନ୍ତି । ତୁମେ ସେ କୁଟିଳ ମନ୍ତ୍ରଣା ଛାଡ଼ । ଦେଶର ଶତ୍ରୁକୁ ବିନାଶ କରି ଧନ୍ୟ ହୁଅ ।"

"ଶତ୍ରୁବିନାଶ ! ଯୁଦ୍ଧ ! ନା—ଜୟପରାଜୟର ଅନିଶ୍ଚିତ ସ୍ଥାନକୁ ଯିବା ମଧ୍ୟ ଠିକ୍ ନୁହେଁ ।"

"ନା—ହେଲ ! ସେପରି କହନା ।" ଏହା କହି ପ୍ରସନ୍ନକୁମାର ତୀକ୍ଷ୍ଣ ଦୃଷ୍ଟିରେ ଉଦ୍ଧତପ୍ରତାପଙ୍କ ମୁଖଆଡ଼କୁ ଅନାଇବାକୁ ଲଗିଲେ । କିନ୍ତୁ ଉଦ୍ଧତପ୍ରତାପ ସ୍ଥିରସଂକଳ୍ପ । ସେ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବେ ନାହିଁ । ପ୍ରସନ୍ନକୁମାରଙ୍କ କଥା ଶୁଣି ତାଙ୍କର ଭ୍ରୂ-ଯୁଗଳ ଈଷତ୍ କୁଞ୍ଚିତ ହେଲ - ନୟନରୁ ବହ୍ନି ଜ୍ୟୋତି ନିର୍ଗତ ହେଲ । ସେ କିଛି ନ କହି ବଂଶୀବାଦନ କଲେ । ବଂଶୀବାଦନ ସଙ୍ଗେ ସଙ୍ଗେବହୁସଂଖ୍ୟକ ମରହଟ୍ଟା ସୈନିକ 'ବମ୍ ବମ୍ ମହାଦେଓ' ରବ କରି ତୋରଣ ଆଡ଼କୁ ଧାବମାନ ହେଲେ ଓ ପ୍ରସନ୍ନକୁମାରଙ୍କୁ ଘେରି ପକାଇଲେ । ପ୍ରସନ୍ନକୁମାର କିଂକର୍ତ୍ତବ୍ୟବିମୂଢ଼ ହୋଇ ଏସବୁ ଦେଖିବାକୁ ଲଗିଲେ । ଉଦ୍ଧତପ୍ରତାପ ପ୍ରତିହିଂସା ସାଧନର ଉପଯୁକ୍ତ ସମୟ ପାଇ ଖଡ୍ଗ-ହସ୍ତରେ ପ୍ରସନ୍ନ କୁମାରଙ୍କ ଆଡ଼କୁ ଧାବମାନ ହେଲେ । କିନ୍ତୁ ପ୍ରସନ୍ନକୁମାରଙ୍କ ମୁଣ୍ଡ ନ ଛିଣ୍ଡୁଣୁ ପଛରୁ କିଏ ଆସି ତାଙ୍କ ମସ୍ତକକୁ ଶରୀରରୁ ବିଛିନ୍ନ କଲେ । ସୈନିକମାନେ ବିସ୍ମୟାବିଷ୍ଟ ନେତ୍ରରେ ଦେଖିଲେ ଯେ, ଜଣେ ସନ୍ନ୍ୟାସିନୀ ଉଦ୍ଧତପ୍ରତାପଙ୍କ ଛିନ୍ନ ମସ୍ତକକୁ ହସ୍ତରେ ଧରି କେଉଁଆଡ଼େ ଚାଲିଗଲ । ତାକୁ ଖୋଜିବା ପାଇଁ ସେମାନେ ଅନେକ ଚେଷ୍ଟା କଲେ; କିନ୍ତୁ କୌଣସିଠାରେ ପାଇଲେ ନାହିଁ । ପ୍ରସନ୍ନକୁମାର ବିସ୍ମିତ ସ୍ତମ୍ଭିତ ହୋଇ ଏହା ଦେଖିବାକୁ ଲଗିଲେ ।

ଉଦ୍ଧତପ୍ରତାପଙ୍କ ମସ୍ତକ ସ୍କନ୍ଧରୁ ବିଚ୍ୟୁତ ହେଲ । ସେଥି ସଙ୍ଗେ ସଙ୍ଗେ ସମ୍ବଲପୁରର ସ୍ୱାଧୀନତା-ରବି ମଧ୍ୟ ଅସ୍ତମିତ ହେଲ । ମରହଟ୍ଟାମାନେ ଅପ୍ରତ୍ୟାଶିତ ଭାବରେ ସମଲାଇ ଫାଟକ * ବାଟେ ଦୁର୍ଗ ମଧ୍ୟରେ ପ୍ରବେଶ କରି ଜୟନ୍ତ ସିଂହ ଓ ତଦୀୟ ପୁତ୍ର ମହାରାଜା ସାଏଙ୍କୁ ବନ୍ଦୀ କଲେ । ସମ୍ବଲପୁର ଦୁର୍ଗ ଶତ୍ରୁମାନଙ୍କ ହସ୍ତଗତ ହେଲ । ପ୍ରସନ୍ନକୁମାର, ପ୍ରାଣପଣ ଚେଷ୍ଟା କରି ସୁଦ୍ଧା ଦୁର୍ଗ ରକ୍ଷା କରିପାରିଲେ ନାହିଁ । ତାଙ୍କ ଆହତ ଶରୀର ଧରାଶାୟୀ ହେଲ । ସମ୍ବଲପୁର ମୁଖ ବିଷାଦ-କାଳିମା ରଞ୍ଜିତ ହେଲା । ସ୍ୱାଧୀନ ଜାତି ପରାଧୀନ ହେଲ ! ହାୟ ଉଦ୍ଧତପ୍ରତାପ ! ଶେଷକୁ ବିମଳାର ରୂପର ମୂଲ୍ୟ ସ୍ୱରୂପ ସ୍ୱଦେଶର ସ୍ୱାଧୀନତା ବିକ୍ରୟ କଲ ! ! !

× × × ×

କିନ୍ତୁ ଏ ସନ୍ନ୍ୟାସିନୀ କିଏ ? ତମୋମୟୀ ରଜନୀରେ ଶ୍ମଶାନରେ ବସି କଣ କରୁଛି ? ସନ୍ନ୍ୟାସିନୀ ବ୍ୟଥିତ ମନରେ, ଆକୁଳ ପ୍ରାଣରେ ଆକାଶକୁ ଅନାଇ ଗାଇବାକୁ ଲାଗିଲ ।

ବ୍ରହ୍ମା ଦୟାମୟ ହୋଇଣ ନିର୍ଦ୍ଦୟ
ଦେଲ ଏ ହୀନ ଜନମ,
କାନ୍ଦି କାନ୍ଦି ସ୍ୱର ଗଲାଣି ତ ସରି
ପୋଡ଼ୁ ଏ ହୀନ କରମ ॥ ୦ ॥

ହେଲି ମୁଁ ସଂସାରେ
ଘୋର ଅଭିଶାପ,
ଯହିଁ ଗଲି ତହିଁ
ବଢୁଅଛି ପାପ;
ଜଗତର ତପ୍ତ ଲୋତକ-ପ୍ରବାହେ
ହେଉଅଛି ଭାସମାନ ॥ ୧ ॥

* ସମଲେଶ୍ୱରୀ ମନ୍ଦିର ନିକଟରେ ଏହାର ଭଗ୍ନାବଶେଷ ଅଦ୍ୟାପି ବିଦ୍ୟମାନ ଅଛି ।

ଅଶାନ୍ତିର ମନ୍ତ୍ର
ପଢ଼ିଲି ଜଗତେ,
ବୁଡ଼ିଅଛୁ ଏବେ
ସ୍ୱଦେଶ ରକତେ;
ଧିକ ମୋର ରୂପ ଧିକ ଯଉବନ
ଧିକ ମୋର ରୂପ ଏ ଜୀବନ ।। ୨ ।।

ଅପାର-ସଂସାର—
ଅପାର-ଯାତନା,
ଦେଉଅଛୁ ମୋତେ
ବିଷମ ଲାଞ୍ଛନା;
ପ୍ରେମମୟ ହରି କରୁଣା ବିସ୍ତାରି
ପାଦପଦ୍ମେ ଦିଅ ସ୍ଥାନ ।। ୩ ।।

ଶ୍ମଶାନକୋଡ଼ରେ ଶାୟିତ ଯନ୍ତ୍ରଣାକାତର ପ୍ରସନ୍ନକୁମାର ଏ ସୁମଧୁର ସଙ୍ଗୀତ ଶୁଣି ମୁଗ୍ଧ ହୋଇଥିଲେ । ତାଙ୍କର ରୁଧିରକ୍ତ ମୁଖରେ ହାସ୍ୟର ବିମଳ ରେଖା ଝିଲସି ଉଠିଲା । କେଉଁ ଅଜ୍ଞାତ ପ୍ରଦେଶରୁ ଅମୃତ ଝଙ୍କାର ଆସି ତାଙ୍କୁ ଗୋଟିଏ ମୋହମୟ ଶାନ୍ତିମୟ ରାଜ୍ୟକୁ ନେଇଗଲା । ସେଠାରେ ସେ ସ୍ୱର୍ଗର ଚିତ୍ର ଦେଖିବାକୁ ପାଇଲେ । କିଏ ଯେପରି ତାଙ୍କ ନିକଟକୁ ଆସି ଚିରପରିଚିତ ବୀଣାଜିଣା ସ୍ୱରରେ ତାଙ୍କୁ ଡ଼ାକି ଗୋଟିଏ ସ୍ୱପ୍ନମୟ କୁଞ୍ଜରେ ତାଙ୍କୁ ବସାଇ ନିଜେ ତାଙ୍କ ନିକଟରେ ବସିଲା । ପ୍ରସନ୍ନକୁମାରଙ୍କ ଶରୀର ପୁଲକିତ ହୋଇଗଲା । ସେ ଅଲୌକିକ ସୌନ୍ଦର୍ଯ୍ୟ, ଅପ୍ସରାସମ୍ଭବ ଜ୍ୟୋତି, କିନ୍ନରକଣ୍ଠ ତାଙ୍କ ମନରେ ଯେପରି ପ୍ରାଚୀନ ସ୍ମୃତି ଅଙ୍କିତ କଲା । ସେ ଚକ୍ଷୁ ଖୋଲି ଦେଖିଲେ, ତାଙ୍କ ନିକଟରେ ଜଣେ ମୁକୁଳିତ କେଶପାଶା, ଗୈରିକ ବସନା, ଅନିନ୍ଦ୍ୟସୁନ୍ଦରୀ ସନ୍ନ୍ୟାସିନୀ-ମୂର୍ତ୍ତି ବସିଛନ୍ତି । ତାଙ୍କୁ ଦେଖି ପ୍ରସନ୍ନ କୁମାରଙ୍କ ଶରୀରରେ ସିଂହ-ବିକ୍ରମ ଉଦିତ ହେଲା । ସେ ଗାତ୍ରୋତ୍ଥାନ କରି ସନ୍ନ୍ୟାସିନୀଙ୍କୁ ଆଲିଙ୍ଗନ କରି କହିଲେ, "ବିମଳା ! ବିମଳା... ଆଉ କହି ପାରିଲେନାହିଁ । ତାଙ୍କ ଶରୀର ଅବସନ୍ନ ହୋଇଗଲା । ଶରୀରର କ୍ଷତସ୍ଥାନ ମାନଙ୍କରୁ ପ୍ରବଳ ବେଗରେ ରୁଧିର ବହିବାକୁ ଲାଗିଲା । ପ୍ରାଣ-ହୀନ ପିଣ୍ଡ ଧରାଲୁଣ୍ଠିତ ହେଲା ।

ବିମଳା ଏହା ଦେଖି ବିକଳରେ ରୋଦନ କରିବାକୁ ଲାଗିଲା । ତାହାର ଜୀବନର ଧ୍ରୁବତାରା ଅସ୍ତମିତ ହେଲା । ସେ ଉତ୍ତରୀୟ ମଧ୍ୟରୁ ତୀକ୍ଷ୍ଣ ଛୁରିକା ବାହାର କରି ନିଜ ବକ୍ଷଦେଶରେ ବିଦ୍ଧ କଲା ।

ଯନ୍ତ୍ରଣା ପ୍ରତି ଲକ୍ଷ୍ୟ ନ କରି ରୁଧିରସିକ୍ତ କଳେବରରେ ପ୍ରସନ୍ନକୁମାରଙ୍କ ରୁଧିରସିକ୍ତ ଶରୀରକୁ ଆଲିଙ୍ଗନ କଲା । ଆହା ! ସେ ଅନ୍ତିମ ଆଲିଙ୍ଗନ—ସେ ଅନ୍ତିମ ଚୁମ୍ବନ କେତେ ପବିତ୍ର—କେତେ ମଧୁର ! ସେ ଲୋତକରେ ଅମୃତ,ରକ୍ତରେ ମନ୍ଦାକିନୀ !

ଏ ସ୍ୱାର୍ଥ ତ୍ୟାଗର ପବିତ୍ର ତପୋବନ ହିଁ ସ୍ୱର୍ଗ !



# ଶିକାର

ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ

---

ସେ ଅଞ୍ଚଳରେ ଘିନୁଆର ନାମ ବିଖ୍ୟାତ୍—ଶିକାରୀ ହିସାବରେ ଜଣା । ତା'ର ପ୍ରଥମ ଅସ୍ତ୍ର ନିଜର ହାତ ତିଆରି ଧନୁଶର । ସେ ତୀର ମାରିଲା ବେଳେ ଚିତ୍ ହୋଇ ଶୋଇପଡ଼େ, ବାଁ' ପାଦଟି ଧନୁରେ ଲଗାଇ ଦେଇ କାନ ପର୍ଯ୍ୟନ୍ତ ତୀରଟି ଟାଣିନେଇ ଛାଡ଼ିଦିଏ । ମାଇଲିଏ ଦୂରରୁ ସେ ତୀରମାରି ଲକ୍ଷ ବିନ୍ଧିପାରେ । ଏହି ଧନୁଶର ସାହାଯ୍ୟରେ ସେ ହରିଣ, ସମ୍ବର, ବାର୍‌ହା, ଭାଲୁ ମାରିଛି ଅଗଣନ; ଚିତାବାଘ ବି ମାରିଛି ଅନେକ । କିନ୍ତୁ ମହାବଳ ମାରିଛି ମାତ୍ର ଦୁଇଟି । ମହାବଳ ଦୁଇଟି ମାରି ସେ ଡେପୁଟି କମିଶନରଙ୍କ ଠାରୁ ବେଶ ପୁରସ୍କାର ପାଇଛି ମଧ୍ୟ ।

ସେ ଦିନ ଭୋରରୁ ସେ ଏକ ଅଦ୍ଭୁତ ଶିକାର ନେଇ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର । ଗୋଟିଏ କାନ୍ଧରେ ତା'ର ଧନୁଟି ଝୁଲୁଛି । ହାତରେ ଦି' ତିନଟା ତୀର । ଆର କାନ୍ଧରେ ଟାଙ୍ଗିଟି ପଡ଼ିଛି । ଘିନୁଆକୁ ଏ ବେଶରେ ଦେଖି ଅର୍ଦ୍ଦଳି ପଚାରିଲା—"କିରେ ଆଜି କି ଶିକାର ଆଣିଛୁ ?"

ଘିନୁଆ ସାଙ୍ଗେ ତାର ଭଲ ଜଣାଶୁଣା । ତା'ର ବକ୍‌ସିସ୍‌ର ଅଂଶୀଦାର କେତେଥର ହୋଇଛି । ଉତ୍ତରରେ ଘିନୁଆ ତା' ମଇଳା ଦାନ୍ତ ଦୁଇଧାଡ଼ି କେବଳ ଦେଖାଇଲା । ସେ ହସିଲା କି ଖେଙ୍କିଲା ଜାଣିବାର ଉପାୟ ନାହିଁ । ପ୍ରକୃତରେ ହସ ବୋଲି ଯାହାକୁ କୁହାଯାଏ, ଘିନୁଆ ଠାରେ ତାହା କେହି କେବେ ଦେଖି ନାହିଁ । ବେଳେବେଳେ ସେ ଏହିପରି ଦାନ୍ତ ଦେଖାଏ । ତାହା ହସ ନୁହେଁ କି କାନ୍ଦ ନୁହେଁ—କେବଳ ଦାନ୍ତ ଦେଖା ।

---

ଗାଳ୍ପିକ : (୧୯୦୯-୧୯୪୩) ବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟର ଜଣେ ଯୁଗାନ୍ତକାରୀ କଥାକାର । ଆଧୁନିକ (୧୯୩୬) ପତ୍ରିକାର ସମ୍ପାଦକ । ସାମ୍ୟବାଦ ଓ ସ୍ୱାଧୀନତାର ଜଣେ ପଥ ପ୍ରଦର୍ଶକ ରୂପେ ସେ ଓଡ଼ିଶାରେ ସ୍ମରଣୀୟ; ରାଜ୍ୟ କମ୍ୟୁନିଷ୍ଟ ପାର୍ଟିର ଅନ୍ୟତମ ପ୍ରତିଷ୍ଠାତା ।

ଅର୍ଦ୍ଦଳି ପଚ୍ଚରିଲା, "କି ବେ, କି ଶିକାର ଆଣିଛୁ ?"

ଘିନୁଆ ତାହାର ଗାମୁଛାରେ ବନ୍ଧା ହୋଇଥିବା ଗୋଟିଏ ପଦାର୍ଥକୁ ଦେଖାଇ କହିଲା ଯେ, ସେ ଆଜ ଏକ ମସ୍ତ ଜାନୁଆର ଶିକାର କରିଛି ।

ଅର୍ଦ୍ଦଳି ପଚ୍ଚରିଲା, 'ବାଘ' ?

ଘିନୁଆ ମୁଣ୍ଡ ହଲାଇ ନାହିଁ ଜଣାଇଲା ।

"ତେବେ କ'ଣ, ଚିତା—ଭାଲୁ—ବାରହା ?"

ଘିନୁଆ କେବଳ ମୁଣ୍ଡ ହଲାଇଲା ।

"ଆଉ ତେବେ କଣ ବେ ?"

ଗୋଳମାଳ ଶୁଣି ସାହେବ ବଙ୍ଗଳା ଭିତରୁ ବାହାର ଆସିଲେ । ଘିନୁଆ ମୁଣ୍ଡି ଆମାର ପୁଣି ସାହେବଙ୍କୁ ସେହିପରି ଦାନ୍ତ ଦେଖାଇଲା । ସାହେବ ଶିକାରର ଚେହେରା ଦେଖିବାକୁ ଔତ୍ସୁକ୍ୟ ପ୍ରକାଶ କରିବାରୁ ଘିନୁଆ ଗାମୁଛା ଭିତରୁ ବାହାର କରି ସାହେବଙ୍କ ପାଦତଳେ ଗୋଟିଏ ସଜ କଟା ମଣିଷ ମୁଣ୍ଡ ଥୋଇଦେଲା ।

ସାହେବ ଚମକି ପଡ଼ି ପାହୁଣ୍ଡେ ଦୁଇପାହୁଣ୍ଡ ପଛୁଇଗଲେ । ଘିନୁଆ ହାତ ବଢ଼ାଇ ମାଗିଲା, "ସାହେବ, ବକ୍‌ସିସ୍" । କିଛିକ୍ଷଣ ପରେ ମନକୁ ସମ୍ଭାଳି ନେଇ ସାହେବ ଘିନୁଆକୁ ବକ୍‌ସିସ୍ ପାଇଁ ଅପେକ୍ଷା କରିବାକୁ ଇସାରା କଲେ ଏବଂ ଭିତରକୁ ଯାଇ ଫୋନ ଦ୍ୱାରା ସଶସ୍ତ୍ର ପୋଲିସ ଫୌଜ ଡ଼ାକାଇଲେ । ଏହା ବ୍ୟତୀତ ଘିନୁଆକୁ କବଜ କରିବାର ଉପାୟ ନାହିଁ । ଦେହରେ ତାର ଗୋଟିଏ ଅସୁରର ବଳ । ହାତରେ ତା'ର ପୁଣି ଧନୁଶର ଓ ଟାଙ୍ଗିଆ ରହିଛି ।

ଯେତେବେଳେ ହାତକଡ଼ି ଗୋଡ଼କଡ଼ି ପିନ୍ଧି ଘିନୁଆକୁ ହାଜତରେ ରହିବାକୁ ହେଲା, ସେ କିଛି ବୁଝିପାରିଲା ନାହିଁ । ତାକୁ ଏପରିଭାବରେ ଅଟକାଇ ରଖିବାର ମତଲବ କଣ ? ସୁବିଧା ପାଇଲେ ସେ କାହାର କାହାରିକି ଏ ବିଷୟରେ ପଚ୍ଚରେ । କିଏ କହେ ତା'ର ଫାଶୀ ହେବ, କିଏ କହେ ସେ ଯିବ କଳାପାଣି । କାହିଁକି ? ସେ ଏମିତି କି ଅପରାଧ କରିଛି କି ? କିଛି ବୁଝି ନ ପାରି ସେମାନଙ୍କ କଥାକୁ ସେ ବିଶ୍ୱାସ କରିପାରେ ନାହିଁ । ଶେଷରେ ଦିନେ ଡେପୁଟି କମିଶନର ପରିଦର୍ଶନ କରିବାକୁ ଆସିଥିଲେ । ସେ ତାଙ୍କୁ ହିଁ ସବୁ ହାଲ ପଚ୍ଚରିଲା ।

ସେ କହିଲେ ଯେ, ପୂର୍ବରୁ ସେ ବାଘଭାଲୁ ମାରୁଥିଲା ବୋଲି ସଙ୍ଗେ ସଙ୍ଗେ ବକ୍‌ସିସ୍ ପାଉଥିଲା, ଏବେ ମାରିଛି ମଣିଷ । ଏଥର ବି ବକ୍‌ସିସ୍ ପାଇବ । ତାହା ତ ପାଞ୍ଚ ଛ'ଜଣ ଫେର୍ ବୁଝିବିଚାରି ଠିକ୍ କରିବେ । ଏ କଥାଟାକୁ ଘିନୁଆ ମନକୁ ମାନିଲା ।

ଯେଉଁଦିନ ତାର ବିଚାର ହେଲା, ଘିନୁଆ ମନେମନେ ଭାବିଲା, ସେ ଦିନ ତାକୁ ବକ୍‌ସିସ୍ ମିଳିବ । ସେ ଉତ୍ସାହିତ ହୋଇ ଜଜ୍‌ଙ୍କ ଆଗରେ ସବୁ ବିବରଣୀ କହିବାକୁ ଲାଗିଲା । ସେ ଯେ ଗୋବିନ୍ଦ ସରଦାରକୁ ହାଣିଲା, ସେଥିପାଇଁ ତାକୁ କମ୍ କଷ୍ଟ କରିବାକୁ ପଡ଼ିନାହିଁ । ଆଉ ଅନେକ ଲୋକ ତାକୁ ମାରିବାକୁ ଚିନ୍ତାକରିଥିଲେ; କିନ୍ତୁ କେହି ପାରି ନଥିଲେ । ଗୋବିନ୍ଦ ସରଦାର ଯେ ସବୁବେଳେ ମଟରରେ ଯିବା ଆସିବା କରେ, ସେ ତାର ଧନସମ୍ପତ୍ତି କମେଇଛି ଅନ୍ୟମାନଙ୍କୁ ଲୁଟିକରି, ବଡ଼ ଶଇତାନ ଲୋକଥିଲା ସେ । କେତେ ଲୋକଙ୍କୁ ସେ ମାରିଛି, କେତେ ଲୋକଙ୍କୁ ଉଚ୍ଛନ୍ନ କରିଛି, କେତେ ଲୋକଙ୍କର ଇଜ୍ଜତ ନେଇଛି, ତାର ଠିକଣା ନାହିଁ, ଘିନୁଆର ସବୁ ଜମିବାଡ଼ି ନେଇ ମଧ୍ୟ ଦଖଲ କରିଛି । ସେ ଦିନ ସନ୍ଧ୍ୟାରେ ଘିନୁଆର ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ବସିଥିଲା । ଏତେବଡ଼ ବାହାସ ! ଘିନୁଆକୁ ଦେଖି ମଟରରେ ପଳାଉଥିଲା ତା ହାତରୁ ଖସି ପଳାଇବ ? ତାର ମଟର ଚକକୁ ଧାର ମାରି ଘିନୁଆ ମଟରକୁ ଅଚଳ କରିଦେଲା । ତା' ପରେ ଟାଙ୍ଗିଆରେ ତାର ମୁଣ୍ଡଟି କାଟି ନେଇ ସିଧା ଦୌଡ଼ିଲା, ଗାଢ଼ ବଣ ଜଙ୍ଗଲ ଭିତର ଦେଇ । ତିରିଶ ମାଇଲ ରାସ୍ତା ସେ ଏକା ନିଶ୍ୱାସକେ ଦୌଡ଼ି ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର ହେଲା ।

ଗୋବିନ୍ଦ ସରଦାର ସାମାନ୍ୟ ଲୋକ ନୁହେଁ । ହାତରେ ତାର ଥାଏ ସବୁବେଳେ ବନ୍ଧୁକ । ବାଘ-ଭାଲୁଙ୍କ ଅପେକ୍ଷା ଲୋକେ ତାକୁ ବେଶି ଭୟ କରନ୍ତି । ବାଘ-ଭାଲୁଙ୍କ ଅପେକ୍ଷା ସେ ଲୋକଙ୍କର କ୍ଷତି କରେ ଢେର ବେଶୀ । ତାକୁ ମାରିବା ପାଇଁ ଘିନୁଆ କମ୍ ସାହସ ଓ ବିଚକ୍ଷଣତା ଦେ' କରିନାହିଁ । କିନ୍ତୁ ତା' ପୂର୍ବେ ମୋଗଲିଆ ଝପଟ ସିଂର ମୁଣ୍ଡ କାଟିଥିବାରୁ ସାହେବ ତାକୁ ପାଞ୍ଚ ଶହ ଟଙ୍କା ବକ୍‌ସିସ୍ ଦେଇଥିଲା । ସେ ସ୍ତ୍ରୀ ଲୋକଙ୍କ ଇଜ୍ଜତ ନେଇନାହିଁ, କି କାହାରି ଜମିବାଡ଼ି ଦଖଲ କରି ନାହିଁ । ସେ କେବଳ ଖଜଣା ଖାନା ଲୁଟି କରିଥିଲା, ଆଉ କେତେଜଣ ସିପାହୀଙ୍କୁ ମାରିଥିଲା । ଗୋବିନ୍ଦ ସରଦାର କିନ୍ତୁ ବଡ଼ ଭୟଙ୍କର ଲୋକ । ତାକୁ ମାରିଥିବାରୁ ଘିନୁଆକୁ ଅଧିକ ବକ୍‌ସିସ୍ ମିଳିବା ଉଚିତ୍ ।

ଘିନୁଆର ଗଳ୍ପ ଶୁଣି ସମସ୍ତେ ହୋ ହୋ ହୋଇ ହସିଉଠିଲେ । ଜଜ୍ ସାହେବ ହସି ହସି କହିଲେ, "ହଁ ଉପଯୁକ୍ତ ବକ୍‌ସିସ୍ ଦିଆଯିବ ।" ସରକାରୀ ଓକିଲ କହିଲେ, "ତେବେ ଏଠାକୁ ଖୋଦ ଅଣାହୋଇଛୁ ବକ୍‌ସିସ୍ ଦିଆଯିବା ଲାଗି ।"

ଘିନୁଆ ଏହାକୁ ପରିହାସ ନମଣି ସତ ବୋଲି ମନେକଲା । କାରଣ ହାସ କୌତୁକ, ଥଟ୍ଟା ପରିହାସ ସେ ଜାଣେ ନାହିଁ; ତାର ସେ ନିତାନ୍ତ ନିପଟ ରସ-ଶୂନ୍ୟ ପ୍ରକୃତି । ଶେଷରେ ରାୟ ଦିଆଗଲା ପ୍ରାଣଦଣ୍ଡ । ଘିନୁଆ ଏହାର କୌଣସି ଅର୍ଥ ବୁଝିଲା ନାହିଁ । ପୁଣି ଜେଲକୁ ଫେରାଇ ତାକୁ ବୁଝାଇ ଦିଆ ଗଲା ଯେ, ତାର ବକ୍‌ସିସ୍ ପାଇବାର ଦିନ ଆସୁଛି ।

ଘିନୁଆ ସେ ପର୍ଯ୍ୟନ୍ତ ବୁଝିଲା ନାହିଁ ଯେ, ସେ ଜଣେ ଅପରାଧୀ ଓ ସେଥିଲାଗି ତାକୁ ପ୍ରାଣଦଣ୍ଡ ଆଦେଶ ହୋଇଛି । ଝିପଟସିଂକୁ ମାରିବା ଓ ଗୋବିନ୍ଦ ସରଦାରକୁ ମାରିବା ଯେ ଏକାକଥା ନୁହେଁ, ତାହା ସେ କାହୁଁ ବୁଝିବ ? ସେ ଜାଣିଲା ନାହିଁ ଯେ, ଗୋଟିଏ ଗୌରବର ବିଷୟ ଅନ୍ୟଟି ଦୋଷାବହ । ଆଇନର ସୂକ୍ଷ୍ମ ଜାଲି ଭିତରେ ପଶିବାକୁ ତାର ମୁଣ୍ଡ ନାହିଁ । ସେ ଯେ ବଣୁଆ ସାନ୍ତାଳ !

ସେ ମନେ ମନେ ଭାବେ, ତୋରା ପାଞ୍ଚ ଟଙ୍କା ପାଇଛୁ ଝିପଟସିଂକୁ ମାରି । ସେଥିରୁ ବେଶୀ ନ ଦେଲେ ସେ କାହିଁକି ନେବ ? ସତ୍ୟ ଫେରାଇ ଦେଇ କହିବ, "କିଛି ନ ଦିଅ ପଛେ ସାହେବ, ତୋରାଠାରୁ ବେଶୀ ପାଇବା ମୋର ହକ୍ ।" ଜେଲ୍‌ର ଅନ୍ଧାରିଆ ଗୁମାରେ ରହି ସେ କେତେ କ'ଣ ଭାବେ । କଥାବାର୍ତ୍ତା କରିବାକୁ ଦେଖେ ନାହିଁ । କଥାବାର୍ତ୍ତା କରିବାକୁ ବି' ତାର ଆଗ୍ରହ ନ ଥାଏ । କେବଳ ବକ୍‌ସିସ୍ ପାଇ ଘରକୁ ଫେରି ଯିବାକୁ ତାର ମନ ଛଟପଟ ହେଉଥାଏ ।

ଶେଷରେ ତାର ଫାଶିର ଦିନ ଆସିଲା । ତାକୁ ପଚରାଗଲା, ତା'ର ଶେଷରେ କ'ଣ ଦରକାର । ସେ କହିଲା, "ମୋର ବକ୍‌ସିସ୍" । "ଆଚ୍ଛା, ବକ୍‌ସିସ୍ ପାଇବୁ ଆ" କହି ତାକୁ ନେଇଗଲେ ! ମୁଣ୍ଡରେ ତା'ର ଗୋଟିଏ କଳାକନାର ଖୋଳ ପିନ୍ଧାଇ ଦିଆଗଲା । ଘିନୁଆ ମନେ ମନେ ଭାବୁଥିଲା— ଆଖିରେ ଅନ୍ଧପୋଟଳି ଦେଇ ହାତରେ ତାର ସୁନା ପାଳୁ ଢାଳି ଦିଆଯିବ ।

ସରକାର ଘରର କେତେ ଫନ୍ଦି ଫିକର, କାଇଦା କଟକଣା ଅଛି । ଝୀଅ ସିନା କ'ଣ ବୁଝିପାରିବ ? ସେ ଘରକୁ ଫେରି ସବୁ ଦେଖାଇବ, କି ଖୁସି ହେବ ସ୍ତ୍ରୀ ତାର ସେ ସବୁ ଦେଖି ! ଭଲ ଘରଦ୍ୱାର କର, ଜମିବାଡ଼ି ଚଷି ସେ ସୁଖରେ ରହିବ । ଅଜିତ ଗୋବିନ୍ଦ ସରଦାର ନାହିଁସେ ସବୁ ଲୁଟି କରି ନେବ ।

ହଁଠାତ୍ କ'ଣ ଗୋଟାଏ ଆସି ତା ବେକରେ ବାଜିଲା ।



# ଟିଙ୍କି

**ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକ**

---

ନାନୀ କହୁଛି କାଲି ଗାଧୁଆ ବେଳେ ଟିଙ୍କି— ସେ ନାନୀ ସାଙ୍ଗରେ ଇସ୍କୁଲକୁ ଯିବ ।

ରାତସାରା ତାର ଆଖିରେ ନିଦ ନାହିଁ । ଥରକୁ ଥର ମା'କୁ ନିଦରୁ ଉଠେଇ ପଚାରୁଛି ସକାଳ ହେଲାଣି କି ନାହିଁ । ନାନୀ କହୁଛି ଆଜି ତାକୁ ଇସ୍କୁଲକୁ ନେଇଯିବ । କେତେ ପିଲାଙ୍କ ସାଙ୍ଗରେ ଚିହ୍ନା କରାଇ ଦେବ । ବିଛଣାରେ ପଡ଼ି ପଡ଼ି ତାର ଭାବୁଛି ସେଇ କଥା । ହଠାତ୍ ଧଡ଼୍‌ପଡ଼୍ ହୋଇ ଉଠି ବସି ମା'କୁ ହଲାଇ ଦେଲା "ମା' ମା', ଉଠ୍ ..ସକାଳ ହେଲାଣି, କାଉ ରାବିଲାଣି ପରା ।"

ନିଦ ମଳମଳ ଆଖିରେ ଖିଡ଼ିକି ଆଡ଼େ ଚାହିଁ ମା' ଜବାବ ଦେଲା, "ଉଁ, ଏ ଛୁଆଟା ମଣିଷକୁ ଟିକେ ଶୋଇଦେବ ନାହିଁ....ଏବେ ଅନ୍ଧାର ଅଛି, ସକାଳ କୋଉଠି ହେଲା ..ହଇରେ ?"

—ହଁ ମୋଟାଏ କାଉ ବୋବାଉଛି—ମୁଁ ସଫା ଶୁଣିଛି । ମା' ଅଳସ ଭାଙ୍ଗି ଭାଙ୍ଗି ବଡ଼ ରମାକୁ ଡାକିଲା "ନାନୀ, ନାନୀ, ସକାଳ ହେଲାଣି ..ଉଠିବୁ ନାହିଁ କିରେ ? ଏ ନାନୀ—

କବାଟ ଖୋଲି ଦୁହେଁ ଯାକ ପଦାକୁ ଆସିଲେ । ମା'କୁ ତାର ବାରବାର ତାଗିଦା ଆଗେ ତା କାମ ସାର, ତା ପରେ ଯାଇଁ ଯୋଉ କଥା ହେବ ।

---

ଗାଳ୍ପିକା : (୧୯୨୩) ଜଣେ ବାସ୍ତବବାଦୀ ଗଳ୍ପ ଲେଖିକା—'ଅମଡ଼ାବାଟ' ତାଙ୍କର ଶ୍ରେଷ୍ଠ ଉପନ୍ୟାସ । ବହୁ ଗଳ୍ପର କଥା-ଭୂମି ପାରିବାରିକ ଜୀବନ, ଚଳନ୍ତି ସମାଜର ସମସ୍ୟାକୁ ନେଇ ପରିକଳ୍ପିତ । 'ଦଳ୍ୟତାର ଧାଳି' 'ପାଲଟା ଢେଉ' 'ଜୀବନ ଚିହ୍ନ' ପ୍ରଭୃତି ହେଉଛି ତାଙ୍କର ଶ୍ରେଷ୍ଠ କଥାଗ୍ରନ୍ଥ ।

ପୋଟଷ୍ଟାଚ ପଥର ଉପରେ ବସି, ହାତରେ ଝଣ୍ଡେ ଝାମା ଧରି, ଶିବ ନିଜ ଦେହକୁ ଘଷୁଛି ଆଉ ମଝିରେ ମଝିରେ ପ୍ରଶ୍ନ କରୁଛି—ମା' ଏଥର ମୁଁ ଗୋରା ଦିଶିଲି ? ମା' ଯେତେ କହିଲେ ବି ଶିବର ମନ ମାନୁନାହିଁ । ସେ ଆହୁରି ବେଶି ଘଷି ହେଉଛି । ଶେଷରେ ଶିବ ଜିଦ୍ ଧରି ବସିଲା ପାଖକୁ ଆସି ଦେଖିଯିବାକୁ । ବାସନମଜା ଛାଡ଼ି ମା ଆସି ଦେଖିଲା ଝାମା ଘଷାରେ ଦେହରେ ନରମ ଚମ ଆଞ୍ଚୁଡ଼ି ହୋଇ ନାଲି ପଡ଼ିଗଲାଣି । ପୁଅ ହାତରୁ ଝାମା ଖଣ୍ଡିକ ଟାଣି ନେଇ ମା' କହିଲା: "ହଇରେ ଝାମାରେ କଏ ଘଷି ହୁଏ ?"

—ଅଳତା ନାଇଲାବେଳେ ଝାମା ଘଷି ତୁ କେମିତି ଗୋଡ଼ର ମଳି ବାହାର କରିଦେଉ ?

ଗାଧୁଆ ସେତିକିରେ ବନ୍ଦ । ଦେହସାରା ପୋଡ଼ିଲାଣି । ପୋଛିପାଛି ହୋଇ ଶିବ ଫେରି ଆସିଲା । ଘରର ମାଟି କାନ୍ଥରେ ଖଣ୍ଡେ ଦର୍ପଣ ପୋତା ହୋଇଛି । ସେଇଠି ଆସି ଠିଆ ହେଲା ଶିବ—ହାତରେ ପାନିଆ । ପାନିଆର ମଝି ଦାନ୍ତଗୁଡ଼ିକ ଭଙ୍ଗା । ଦୁଇ ମୁଣ୍ଡରେ ଯାହା ଦି' ଚାରି ଗଣ୍ଡା ଦାନ୍ତ ଅଛି, ସେତିକି । ସେଇ ପାନିଆରେ ଶିବ ନିଜର ତେଲ ଜର ଜର ଝାଁଟା ବାଳଗୁଡ଼ାକୁ ଚିକ୍କଣ କରି ପାରିବାକୁ ଲାଗିଗଲା । ମନରେ ଆନନ୍ଦ ସବୁ ଅଳି ତାର ସଫା, ସୁନ୍ଦର, ଚିକ୍କଣ ।

\+ \+ \+ \+

ସ୍କୁଲ ଫାଟକ ପାଖେ ପହଞ୍ଚି ଶିବ କହିଲା, "ନାନି, ମତେ ସବୁ ଜିନିଷ ଦେଖେଇ ଦବୁଟି ? ଆଉ ସବୁ ପିଲାଙ୍କ ସାଙ୍ଗରେ ଚିହ୍ନା କରେଇଦବୁ...ଏଁ ?"

"ହଉ ! ହେଇ ଦେଖ । ଏଠି କେମିତି ଦୂବଘାସ ହେଇଛି, ଆଉ ଏଠି ମୁଥା ଘାସ ।"

"ଆରେ ହଁ ତ" କହି ଜୀବନରେ କେବେ ଘାସ ନ ଦେଖିଲା ପରି ଶିବ ନଇଁପଡ଼ି ନିଜ ହାତରେ ଥରେ ଘାସଗୁଡ଼ାକ ପରଖି ନେଲା । ତାପରେ ସେମାନେ ଆଗକୁ ଚାଲିଲେ ।

ଗୋଟିକ ପରେ ଗୋଟିଏ ଗଛ ରମା ଦେଖେଇ ଚାଲିଛି....ମନ୍ଦାର, ପଳାଶ, କୃଷ୍ଣଚୂଡ଼ା, ରଜନୀଗନ୍ଧା, ଆମ୍ବ, ବେଲ—କିଏ ଫୁଲ ଫଳରେ ଲଦି ହୋଇଛି, ଆଉ କିଏ ବା ସେମିତି ଥୁଣ୍ଟା ଛିଡ଼ା ହୋଇଛି, କିନ୍ତୁ ଶିବ ଆଖିରେ ଆଜି ସବୁ

ସୁନ୍ଦର । ଆଖିରେ ଇନ୍ଦ୍ର ଧନୁର ରଙ୍ଗ ବୋଳି ଯେ ଗୃହଅଡ଼କୁ ଚାହୁଁଛୁ, ପୁଣି ଅଗକୁ ମାଡ଼ି ଚାଲିଛୁ ।

ଗନ୍ତ ପଡ଼ ଦେଖାଯାଉଛି । ବାକି ରହୁଛି ସ୍କୁଲଘର ଯେଉଁଠି ପିଲାମାନେ ଆରାମରେ ବସି ପାଠ ପଢ଼ନ୍ତି । ରମା ଦେଖିଲା ତାଙ୍କ କ୍ଲାସ ଖୋଲା ହୋଇନାହିଁ । ଭଙ୍ଗା ଖିଡ଼କିବାଟେ ଉପରକୁ ଉଠି, ଝରକାର ହାତକୁ ଧରି ଭିତରକୁ ଚାହିଁ ନେଲା । କବାଟ ଖିଡ଼କି ବନ୍ଦ, ସବୁଆଡ଼ ଅନ୍ଧାର ଦିଶୁଛି । ଚାଲିଲାବେଳେ ଦେହ ଦେହରେ ଧକ୍‌କା ଲାଗିଯାଉଛି, ଆଉ ତାଆର ଦାଙ୍କେ ଯାଙ୍କେ ବିନ ପାଟିରୁ ନିଜର ଅଜାଣତରେ ବାହାରି ଅସ୍ପଷ୍ଟ 'ବାପଲୋ' 'ମାଆଲୋ' ଚିତ୍କାର । ଶେଷକୁ ରମାର ଜାମା ଟାଣି ଧରି କହିଲା, "ନାଇଁ ଲୋ ନାନ, ଭୂତଥିବ....ଚାଲ ଫେରିଯିବା" ତୁଣ୍ଡରୁ କଥା ସରିନାହିଁ ବିଜୁଳି ବତି ଜଳି ଉଠିଲା ଆଉ ସେଇ ଆଲୁଅ ତଳେ ଦେଖାଗଲା ରମା ମୁହଁରେ ସବଙ୍କର ଛପିଲା ହସ । ବିନ କାବା ହୋଇ ଚାହିଁଛି-ନାନୀ ତାର କେତେ କଥା ଜାଣିଲାଣି । ସେ କହିଲେ ବିଜୁଳିବତି ଜଳୁଛି ।

ଆନନ୍ଦରେ ଗୋଡ଼ ତଳେ ଲାଗୁନାହିଁ—ଏ ଜାଗାରୁ ସେ ଯାଗାକୁ ଯାଉଛନ୍ତି, ପୁଣି ଆସୁଛନ୍ତି । ଉପରେ ନେଳିଆ ଆକାଶ ନାହିଁ କି ତଳେ ଶାଗୁଆ ଘାସର ଗାଲିଚ୍ଚ ନାହିଁ; ତଥାପି ସେଇ ଚୂନଲା ଘରେ ଦିଉଁଟି ମଣିଷଛୁଆ ବସନ୍ତ କାଳର କୀଟ-ପତଙ୍ଗ ପରି ଆନନ୍ଦରେ ନିଜକୁ ଭୁଲିଯାଇଛନ୍ତି ।

+ + + +

ପଡ଼ିଆରେ ଦଳ ଦଳ ହୋଇ ପିଲା ବୁଲୁଛନ୍ତି । ଚିହ୍ନା ପିଲାଙ୍କୁ ଦେଖି ଭାଇର ହାତ ଧରି ରମା ତାଙ୍କ ପାଖକୁ ଗଲା । ଦଳକ ପାଖ ବିନକୁ ଚାହିଁଛନ୍ତି—ସମସ୍ତ ଓଠରେ ମୁରୁକି ହସି ।

— ଏ କିଏ ରମା ?

—ମୋ ଭାଇ ।

—ଠିକ୍ ଅନାର୍ଯ୍ୟଙ୍କ ଭଳି ଦିଶୁଛି । ଜଣେ ଟିପ୍‌ପଣୀ କାଟିଲା ।

ରମାର ମୁହଁ ଶୁଖିଗଲା । ସନ୍ଦେହ ଭରା ଆଖିରେ ଭାଇକୁ ଆଉ ଥରେ ଭଲ କରି ଦେଖି ନେଲା । ବିନର ଚେପ୍‌ଟା ନାକ, ମୋଟା ଓଠ, ପୁଳୁକା ଗାଲ

ଏ ପାତଳା ଗାଲ ପରି ଦେହର ରଙ୍ଗ । କୌଣସିଥିରେ ରମା ଦୋଷ ଖୋଜି ପାଇଲା ନାହିଁ । ଭାଇର କାନ୍ଧ ଉପରେ ହାତ ରଖି କହିଲା, "ତତେ ମିଛରେ କହୁଛନ୍ତିରେ, ତୁ ଡର ନା" । ବନ ଯେ ଡ଼ରି ନାହିଁ ଏ କଥା ଦେଖେଇବାକୁ ହସିଦେଲା । ମୋଟା ଓଠ ଦି'ଫାଳ ଭିତରୁ ଧରୁ ଜିଭଟିଏ ପଦାକୁ ବାହାରି ଆସି ଲହ ଲହ ହୋଇ ପୁଣି ପଶିଗଲା – ଠିକ୍ ସାପ ପରି ।

—ହେ ପିଲା, ଆଉ ଟିକେ ହସିଲୁ ହସିଲୁ ··

—ନାହିଁ । ବନ ମୁହଁ ଶୁଖେଇ ଛୁଡ଼ା ହେଲା ।

—ଆରେ ! ନହାତ ଅବାଧ ଛୁଆଟାଏ ତ ! ! ହସୁ !

—ନାନ, ଚାଲ ଖେଳିବା ।

ବନ ନାନୀର ହାତ ଧରି ଖେଳିବାକୁ ଚାଲିଗଲା ।

ଖେଳ ଖେଳ ଦେହରୁ ଝାଳ ନିଗିଡ଼ି ପଡ଼ୁଛି । ସୂର୍ଯ୍ୟ ମୁଣ୍ଡ ଉପରୁ ତଳକୁ ଢ଼ଳିଲେଣି ତଥାପି ରହିବା ଦରୁନାହିଁ ।

\+ \+ \+ \+

ଧାଡ଼ି ଧାଡ଼ି ପିଲା ଚାଲିଛନ୍ତି—ଗୋଟାଏ ହାତରେ ଚଟେଇ, ଆଉ ହାତରେ ଝଲପତ୍ର । ଗୋଟିଏ ଧାଡ଼ିର ଶେଷ ମୁଣ୍ଡରେ ବସିଛନ୍ତି ବନ ଆଉ ରମା । ବନର ଲୋଭିଲା ଆଖି ଦୁଇଟା ରହିଛି ପତ୍ର ଉପରେ । ମଝିରେ ମଝିରେ ନାନୀକୁ ଚିମୁଟି ଦେଉଛି ନାନୀ ଆରମ୍ଭ କଲେ ସେ ଆରମ୍ଭ କରିବ । ଖେଳାଲା-ବେଳେ ନାନୀ ତାକୁ ବାର ବାର କରି କହିଛି, ନାନୀ ଆରମ୍ଭ ନ କରିବାଯାଏ ସେ ଯେମିତି ଆରମ୍ଭ ନ କରେ ।

ସ୍କୁଲର ବଡ଼ ମୁଣ୍ଡି ଆମାନେ ଦୁରୁଦୁରୁ ଦେଖୁଛନ୍ତି ସମସ୍ତଙ୍କୁ ଠିକ୍ ଦିଆ ହୋଇଛି କି ନାହିଁ । ହଠାତ୍ ଜଣକର ଆଖି ପଡ଼ିଗଲା ରମାର ଗୋଡ଼ ଉପରେ—ମନ୍ଦା ମନ୍ଦା କାଛୁ । ରମାକୁ ଚାହିଁ ସେ ଚିତ୍କାର କରି ଉଠିଲେ,—ତମର କାଛୁ ହୋଇଛି—ଅନ୍ୟମାନଙ୍କୁ ଡେ଼ଇବ । ତମେ ଯାଅ ଖେଳୁଥିବ । ଏମାନେ ଖାଇ ସାରିଲେ ତମକୁ ଡ଼ାକି ଆଣିବା ।" ରମା ଉଠିପଡ଼ିଲା ।

ବନ ବିକଳ ହୋଇ ଚାହିଁଛି ନାନୀ ମୁହଁକୁ ।

—ଏ ପିଲା କିଏ ?

—ମୋ ଭାଇ ।

—ଅଚ୍ଛା, ତାକୁ ବି ତମେ ସାଥିରେ ନେଇଯାଅ । ତମେ ଖାଇଲାବେଳେ ସେ ଖାଇବ ।

ସାଙ୍ଗ ଭଉଣୀ ଦୁହେଁ ଉଠି ଗଲେ ଖାଇବା ଜିନିଷକୁ ଲୋଭିଲା ଆଖିରେ ଚାହିଁ ଚାହିଁ ।

—ବୁଝିଲୁ ବିନ, ସେମାନେ ଖାଇପାରନ୍ତି ଆମେ ଖାଇବା ।

—ନାଇ ନାନି, ମତେ ଖରାପ ଲାଗୁଛି କଲାଣି ...ବାନ୍ତି ମାଡ଼ୁଛି । ସକାଳେ ମା ଖାଇବାକୁ ଦେଲାବେଳେ ତୁ ମନାକଲୁ ।

—ହଁ ହଁ ରହିଥା, ଆଉ ଟିକିଏ ବେଳ ତ ! ଦେଖିଲୁ ତ କେତେ ବଢ଼ିଆ ଜିନିଷ ସବୁ ରନ୍ଧା ହେଉଛି । ସକାଳେ ତ ମା' ପଖାଳ ଖାଇବାକୁ ଦେଉଥିଲା... ତାକୁ ଖାଇଥିଲେ ତୁ କଣ ଭଲ ଜିନିଷକୁ ବେଶି ଖାଇପାରିଥାନ୍ତୁ ?

—ମତେ ବାନ୍ତି ମାଡ଼ୁଛି ।

—ହଉ ତେବେ ଚାଲ, ଏଇଟା ବେଲପତ୍ର ଶୁଙ୍ଘିଦେଲେ ବାନ୍ତି ଭଲ ହୋଇଯିବ ।

ବେଲପତ୍ର ଶୁଙ୍ଘିବା ବଦଳରେ, ଦୁଇମୁଠା ବେଲପତ୍ର ଛିଣ୍ଡାଇ ଖାଇଦେଇ ବିନ କହିଲା "ନାନି ଖରାପ ଲାଗୁଛି .."

—ହେଇ ଦେଖ, କଣ ସବୁ ରନ୍ଧା ହେଉଛି ତତେ ମୁଁ ଏଇଠି ଦେଖେଇ ଦଉଛି, କହି ରମା କାଠିକୁଟା ସାଉଁଟି ଅଣି ମାଛ ମାଂସର ଠା' ଘୁମାଉ କଲା । ଇଟା ଗୋଡ଼ି ମିଠେଇ ଭାବରେ ଏ ଘାସ ପତ୍ର ତରକାରି ଭାବରେ ଜଣାଗଲା । ବିନର ଭୋକିଲା ଆଖିକୁ ଚାହିଁ ରମା ଭୂତ ଗପ ଆରମ୍ଭ କଲା, ଏଇଠି ଏଇ ପାଚେରି ଆରପଟେ ଯେଉଁ ଅନ୍ଧାରିଆ ଘରଟା ଦେଖୁଚୁ—ସେଇଠି ଭୂତ ଥିଲା ।

× × × ×

ଭୂତ ଉପରେ କେତେବେଳେ ଯାଉଛୁ ଜଣାନାହିଁ । ବୃଡ଼ନ୍ତା ସୂର୍ଯ୍ୟର ଲାଲଚଆ କିରଣ ସ୍ପଷ୍ଟହୋଇ ପଡ଼ୁଛୁ । ପିଲା ଦହେଁ ଆଲୁଳା ହୋଇ ବସିଛନ୍ତି ସେଇ ଘାସ ଉପରେ । ହଠାତ୍ କାହାର ପାଟିରେ ଚମକି ପଛକୁ ଚାହିଁ ଦେଖିଲେ ଚପରାଶି ଡାକୁଛ । ଖୁସି ହୋଇ ରମା ଭାଇର ହାତ ଧରି ଉଠିଲା, ଚାଲ ଏଥର ଖାଇବା, ଦେଖୁନୁ ଚପରାଶି ଡାକ ଅଛି ? ଶୁଖିଲା ମୁହଁରେ ହସ ଫୁଟେଇ ଚପରାଶିକୁ ଚାହିଁ ରମା ପଚାରିଲା—ସେମାନେ ଖାଇସାରିଲେଣି ?

—ହଁ, ସଭିଏଁ ଖାଇସାରି ଘରକୁ ଗଲେଣି...ତମେ ଆସି ଏଠି ବସିଚ, ଘରକୁ ଯିବ ନାହିଁ କି ?

ନଜର ଅଜାଣତରେ ମୁଠା ଭିତରୁ ଭାଇର ହାତ ଖସି ପଡ଼ିଲା । ରମା ଆଖିରେ ପାଣି ।

ଦୟା ଦେଖେଇ ଚପରାଶି କହିଲା, "ଚାଲ, ମୁଁ ଘରେ ଛାଡ଼ି ଦେଇଯିବି ।"

....ନା ଥାଉ । ଆମେ ଏକା ଚାଲିଯିବା ଯେ ।,,

\+ \+ \+ \+

ଖେଳ ଜାଗା । ଅଇଁଠା ପତ୍ର ଉପରେ କାଉ କୁକୁରଙ୍କର ମେଳ । ସେଇଠି ଚାରୋଟି ଧୂଳି ଧୂସରଆ ଛୋଟ ଛୋଟ ପାଦ ମୁହୂର୍ତ୍ତକ ପାଇଁ ଅଟକି ପୁଣି ଆଗକୁ ଚାଲିଗଲା ।

ସକାଳେ ଯେଉଁ ପାଦ ଚାରୋଟି ହାଲୁକାରେ ତଳେ ଲାଗୁ ନଥିଲା—ସଞ୍ଜବେଳକୁ ତାର ଯେମିତି ମାଟି ଉପରୁ ଉଠିବାକୁ ଆଉ ବଳ ନାହିଁ !!!



# ମେଡିକାଲ କଲେଜରେ ମେହେର ଜୟନ୍ତୀ

ଶ୍ରୀ ଫତୁର ନନ୍ଦ

---

ଘଣ୍ଟା କଣ୍ଟା ପରି ପ୍ରତିବର୍ଷ ଥରେ ଲେଖାଏଁ ମେହେର ଜୟନ୍ତୀ ଓଡ଼ିଶାକୁ ଆସେ । କବି, ସାହିତ୍ୟିକ ତଥା ସାହିତ୍ୟ ପ୍ରେମୀମାନେ ସେହି ଦିନଟି ଉତ୍ସବରେ କଟାନ୍ତି । ବହୁ ସଭାସମିତିର ଆୟୋଜନ ହୁଏ । ତରୁଣ ବକ୍ତାମାନେ ଦୁଇ ବୃନ୍ଦାବନ ଆଗରୁ କାଦୁଅ ଚପି କୋଠଆ ଧରିଲା ପରି, ବିଷୟବସ୍ତୁ ପାଇବା ପାଇଁ ମେହେର ଗ୍ରନ୍ଥାବଳୀ ଘାଣ୍ଟି ବସନ୍ତି ଓ ଠିକଣା ସମୟରେ ଖୋଲେଇ ଭିତରୁ ଘଲ ଘାଲ କରି ମାନ୍ଥ ଗୁଡ଼ାକ କାଢ଼ି ପକାଇଲା ପରି ପେଟରୁ ମେହେରଙ୍କ ବିଷୟରେ ଜ୍ଞାନ ଗୁଡ଼ାକ ଓକାଳି ପକାଇବାକୁ ଉତ୍ସୁକ ହୋଇ ରହିଥାଆନ୍ତି । ବୁଢ଼ା ଧୋତଡ଼ା ବକ୍ତାମାନେ ମେହେରଙ୍କୁ କିପରି ନୂଆ ଭାବରେ ସଜେଇ ଲୋକଙ୍କୁ ଦେଖେଇବେ, ସେଥିଲାଗି ନିଜ ନିଜ ମୁଣ୍ଡକୁ ଦହିହାଣ୍ଡି ମନ୍ଥିଲା ପରି ମନ୍ଥିବାରେ ଲାଗିପଡ଼ନ୍ତି । ଖୁବ ପ୍ରବଣ ଛାତ୍ରମାନେ ଭବିଷ୍ୟତରେ ମେହେରଙ୍କ ପରି ହେବାକୁ ମନେ ମନେ ପରମେଶ୍ୱରଙ୍କୁ ପ୍ରାର୍ଥନା କରନ୍ତି । ମୋଟ ଉପରେ ଯେପରି ବସନ୍ତ ଆସିଲେ ଦେହ ଉଲୁସିଲା ପରି କବି, ସାହିତ୍ୟିକ ମାନଙ୍କ ଦେହ ମେହେର ଜୟନ୍ତୀ ଆଗମନରେ ଉଲୁସି ଉଠେ । ସମସ୍ତେ ଊଣା ଅଧିକେ ଜୟନ୍ତୀକୁ ସାଦର ଅଭ୍ୟର୍ଥନା ଜଣାନ୍ତି ।

---

ଗାଳ୍ପିକ, (୧୯୧୫— ), ଜଣେ ହାସ୍ୟରସାତ୍ମକ କଥାକାର ରୂପେ ସୁପରିଚିତ ସମାଜ ଜୀବନର ନାନାଦି ଅସଙ୍ଗତିର, ଓ ବାସ୍ତବ ଘଟଣାର ବ୍ୟଙ୍ଗାତ୍ମକ ଆଲେଖ୍ୟ ତାଙ୍କ ଗଳ୍ପ ସମୂହର ଉପଜୀବ୍ୟ । କଥାକାରଙ୍କର ଆଭିମୁଖ୍ୟ ହେଉଛି; ନାନା ଅସଙ୍ଗତିକୁ ଉପହାସ କରି ସମାଜକୁ ସଚେତ ସମ୍ପନ୍ନ କରାଇବା ଲାଗି ପ୍ରେରଣା ଦେବା । ନାଙ୍କଟା ଚନ୍ଦ୍ରକର, ହେରଫା, ସାହିତ୍ୟ ଭୂତ, ମଙ୍ଗଳବାରିଆ ସାହିତ୍ୟ ସଂସଦ ଇତ୍ୟାଦି ତାଙ୍କର ବିଶିଷ୍ଟ କଥା-କୃତି ।

ସେ ବର୍ଷ ମେହେର ଜୟନ୍ତୀ ଅପୂ ଆସୁ ଦେବାତ ମେଡ଼ିକାଲ କଲେଜ ଭିତରେ ପଶିଗଲା । ମାଳକୁ ଝୋଲ ଅଡୁଆ । ଡ଼ାକ୍ତର ତଥା ଡ଼ାକ୍ତର ଛାତ୍ରମାନେ ଜୟନ୍ତୀକୁ ହଠାତ୍ ପଶି ଯିବାର ଦେଖି ଟିକିଏ ହଡ଼ ବଡ଼େଇ ଗଲେ ସତ, କିନ୍ତୁ ଦବିଗଲେ ନାହିଁ । ଯେଉଁମାନେ ଲୋକଙ୍କ ଗଲା ଆସିଲାବେଳେ ଦବି ଯାଆନ୍ତି ନାହିଁ, ସେମାନେ କି ମେହେର ଜୟନ୍ତୀକୁ ଦେଖି ଡ଼ରି ଯିବେ ? ଡ଼ାକ୍ତର ତଥା ଡାକ୍ତରୀ ଛାତ୍ରମାନେ ଠିକ୍ କଲେ ମେହେର ଜୟନ୍ତୀ ଅଲବତ୍ ପାଳିବେ—ପୂରାଦାମ ସଜାସଜି କରି ପାଳିବେ ।

ସେମାନଙ୍କୁ ଯେ ମେହେର ଜୟନ୍ତୀ ପାଳି ଆସେ, ତାହା ଅନ୍ତତଃ ସାହିତ୍ୟିକ ମାନଙ୍କୁ ଦେଖାଇ ଦେବା ଦରକାର । ତେଣୁ ଠିକ୍ ହେଲା । ବାହାରର ଜଣେ ବଡ଼ ସାହିତ୍ୟିକଙ୍କୁ ସାଙ୍ଗେ ସାଙ୍ଗେ ନିମନ୍ତ୍ରଣ କରି ଅଣାଇବାକୁ ହେବ । କେତେ ଜଣ କହିଲେ ଯେ ସୁସ୍ଥ ସବଳ ସାହିତ୍ୟିକ କେହି ମେଡ଼ିକାଲ ଭିତରକୁ ଆସିବାକୁ ରାଜି ହେବେ ନାହିଁ । ଜଣେ କହିଲା—'କିଛି ପରବାଏ ନାହିଁ । ଯେଉଁ ସାହିତ୍ୟିକର ପେଟମରା ଥିବ ଓ ପେଟ୍ଟ ହେଉଥିବ, ତାକୁ ନିମନ୍ତ୍ରଣ କରିବା ମାତ୍ରେ ଧାଇଁ ଆସିବ । ବେଶି ଖୋଜିବାକୁ ପଡ଼ିବ ନାହିଁ । କାରଣ ଅଧିକାଂଶ ସାହିତ୍ୟିକଙ୍କର ପେଟକୁ ମାରେ ।" ଦୁଇଜଣ ଚାଲିଗଲେ ନିମନ୍ତ୍ରଣ କରିବାକୁ ।

ଯାତ୍ରେ ପୁଣି ଘର ସଜା ହେବ; ଆଉ ସମୟ ନାହିଁ । ଅଧ୍ୟାପନା କୋଠରୀ ବା ଲେକ୍‌ଚର ହଲ୍‌ର ଫାଟକ ଦୁଇ ପାଖରେ ଯୋଡ଼ାଏ କଙ୍କାଳ ବା ସ୍କେଲିଟନ୍ ଠିଆ କରାଗଲା ! ଉଭୟଙ୍କର ହାତକୁ ନମସ୍କାର କରିବା ଭଙ୍ଗୀରେ ରଖି ସୂତା ବାନ୍ଧି ଦିଆଗଲା । ମୁଣ୍ଡ ଉପରକୁ ଦୁଇଟା ଜାନୁ-ହାଡ଼ ପକାଇ ତା ଆଗକୁ ଗୋଟିଏ ମୁଣ୍ଡ ହାଡ଼ ବା ଖପୁରି ରଖାଗଲା । ତା ତଳକୁ ଲେଖାଗଲା "ସ୍ୱାଗତମ" ।

ପାଖରେ ଠିଆ ହୋଇ ଦେଖୁଥିବା କେତେକ ବାହାର ଲୋକ ଗୁଣୁଗୁଣୁ ହୋଇ କହୁଥାନ୍ତି—"ଅଳ ପେଇସେ ଯମ ଘରକୁ ସ୍ୱାଗତ କରୁଛନ୍ତି—କୋଉ ବୋକଡ଼ ଜାଣୁ ଜାଣୁ ତା ଭିତରକୁ ପଶିବ ।" ଅବଶ୍ୟ ତାଙ୍କ କଥା କାହାକୁ ଶୁଭୁ ନଥିଲା ।

ଘର ଭିତରଟା ତ ପୁଣି ସଜା ହେବ ! ରକ୍ତ କଣିକାର ବଡ ବଡ଼ ରଙ୍ଗୀନ କାଚ ଛବି ସବୁ ଗ୍ଲାସପଟେ ମରାଗଲା । ନାଲି ନେଳି ହୋଇ ସେଗୁଡ଼ିକ ବଡ଼ ସୁନ୍ଦର ଦେଖାଗଲା । ମେହେରଙ୍କ ଛବିକୁ ରଖିବାଲାଗି ଗୋଟିଏ ଭଲ ଟେବୁଲ

ଦରକାର ପଡ଼ିଲା । ସଙ୍ଗେ ସଙ୍ଗେ ଅପରେସନ କୋଠରୀରୁ ଗୋଟିଏ ଚକଚକିଆ ଟେବୁଲ ଆସିଗଲା । ତା' ଉପରେ ଦୁଇଖଣ୍ଡ ଗଜ୍ କନା ତଳ ବିଛା ହେଲା ଓ ତା' ଉପରେ ହାଡ଼ ଯୋଡ଼ା ଦଣ୍ଡା ବା ସ୍ପ୍ଲିଣ୍ଟ ଡିସ୍ବଢ଼ଆ ହୋଇ ମେହେରଙ୍କ ଗୋଟିଏ ନିବ ଥୁଆଗଲା । ସବୁପରଙ୍କ ପାଇଁ ଗୋଟିଏ ଭଲ ଚଉକି ଦରକାର । ଦାନ୍ତ ଭଙ୍ଗା ଘରୁ ଦାନ୍ତଭଙ୍ଗା ଚଉକିଟା ଆଣି ଥୋଇ ଦେଲେ । ତା'ପରେ ଟେବୁଲ ଉପରେ ଫୁଲଦାନୀ ଥୁଆ ହେଲା ପରି ଭ୍ରୂଣ ସାଇତା ହୋଇଥିବା କେତେ ଗୁଡ଼ାଏ କାଚର ବୟମ ଆଣି ରଖି ଦେଲେ ।

ସକାସକ ସରିଛି କି ନାହିଁ, ଦୁଇ ଜଣ, ବିକୃତ ମୁଖ-ବିଶିଷ୍ଟ ଓ ପେଟକୁ ଦୁଇ ହାତରେ ଚିପି ଧରିଥିବା ଜଣେ ସାହିତ୍ୟିକଙ୍କୁ ଘେନି ଆସି ପହଞ୍ଚିଗଲେ । ଏତେ ଚଞ୍ଚଳ ଜଣେ ସାହିତ୍ୟିକ ମିଳିଯିବାର କାରଣ ବୁଝି ବୁଝି ଜଣାଗଲା ଯେ ସେ ଦୁଇଜଣ ଛାତ୍ର ସାହିତ୍ୟିକ ଖୋଜି ଯାଉଁ ଯାଉଁ ଡାକ୍ତରଖାନା ଫାଟକ ପାଖରେ ତାହାଙ୍କୁ ରାସ୍ତାରେ ବସି, ପେଟ ଚିପିଧରି ମୁହଁକୁ ନିସାଡ଼ି ଆସୁଥିବାର ଦେଖାଗଲା । ଆଉ ସହର ଭିତରକୁ ଯିବା ଦରକାର ପଡ଼ିଲା ନାହିଁ । ଦୈବ ଅନୁକୂଳ ହେଲେ ସିନା ଏମିତି ଖାଲେଇ ଭିତରେ ମାଛ ଆସି ଛୁଇଁ ଛୁଇଁ ପଶିଯାଏ ! ପେଟସବୁ ପାଇଁ ଡାକ୍ତର ଖାନାକୁ ସେ ଔଷଧ ନେବାକୁ ଆସୁଥିଲେ, ହାବୁଡ଼ି ଗଲାରୁ ଦୁହେଁ ତାଙ୍କ ପାଖକୁ ଯାଉଥିଲେ ବୋଲି କହି ନିମନ୍ତ୍ରଣଟା କରି ଦେଲେ । ଯେବେ କଥାଟା ରଖିଲେ—ଭଲ ଔଷଧ ମିଳିବ ବୋଲି ରାଜି ହୋଇ ଦୁହିଁଙ୍କ ସଙ୍ଗରେ ଆସିଲେ ।

ଘର ଭିତରକୁ ପଶୁ ନ ପଶୁଣୁ କଙ୍କାଳ ଓ ଖପୁରି ମାନଙ୍କ ସ୍ୱାଗତ ଦେଖି ସାହିତ୍ୟିକ ଛନିଆରେ ହୁବୁଡ଼ିଲେ । ମନେମନେ ଭାବିଲେ "ଅଦ୍ୟ ପ୍ରାତଃରେ କାନସ୍ୟଂ ଦର୍ଶନଂ ଜାତଂ"; ଯାହାହେଉ ଭଦ୍ରତା ଖାତିରରେ ସେ ଭାବ ଦମନ କରି ଭିତରକୁ ଗଲେ । ତା ଉପରେ ପୁଣି ଦାନ୍ତ ଓପଡ଼ା ଚଉକି ! ଏ ଚଉକି ସହ ଆଗରୁ ସେ ଥରେ ପରିଚିତ ହୋଇଥିଲେ । ଅଲକ୍ଷରେ ତାଙ୍କ ଜିଭଟା ସବୁ ଦାନ୍ତ ମୂଳ ଠିକ୍ ଅଛି କି ନା, ତାହା ପରୀକ୍ଷା କରି ଦେଖିନେଲା । ସେ ଚଉକି ଉପରେ ବସିବାକୁ କୁନ୍ଥୁ କୁନ୍ଥୁ ହେଉଥିଲେ ସୁଦ୍ଧା ବାଧ୍ୟ ତାଡ଼ନାରେ ବାଧ୍ୟ ହୋଇ ବସିଲେ ।

ଟେବୁଲ୍ ଉପରେ ଫୁଲଦାନୀ ପରି ଥୁଆ ହୋଇଥିବା କାଚ ବୟମ ସବୁ ଦେଖି ତାଙ୍କ ମୁଖ ବିକୃତ ଟିକିଏ ବେଶୀ ବଢ଼ିଗଲା । ପେଟ ବେଶୀ ମାରୁଛି ଭାବି

ଜଣେ ଗରମ ପାଣିର ଥଳି ପେଟ ଉପରେ ଲଗାଇବାକୁ ଓ ଦୁଇଟା ବଟିକା ଖାଇବାକୁ ଦେଲା । ପେଟ ବେଦନା ଅଳ୍ପ ଊଣା ପଡ଼ିବାରୁ ସେ ଟିକଏ ଠିକ ଠାକ ହୋଇ ବସିଲେ । ମାମୁଲି ସ୍ୱାଗତ ପରେ ସଭା ଆରମ୍ଭ ହୋଇଗଲା ।

ପ୍ରଥମେ ଜଣେ ଡାକ୍ତର ଉଠି ବକ୍ତୃତା ଆରମ୍ଭ କଲେ—"ସଭାପତି ଓ ବନ୍ଧୁବର୍ଗ—ଯେଉଁ ମହାତ୍ମାଙ୍କ ଜୟନ୍ତୀ ଆଜି ପାଳିତ ହେଉଛି, ସେ ଓଡ଼ିଶାର ଜନ ସାଧାରଣରେ ଭଲ ଭାବରେ ଜଣା-ଶୁଣା । ଓଡ଼ିଶାରେ ଏପରି ସ୍ଥାନ ଥାଇପାରେ ଯେଉଁଠାରେ କି ଗୋଟିଏ ହେଲେ ଡାକ୍ତର ନଥିବେ, କିନ୍ତୁ ଏପରି ସ୍ଥାନ ନାହିଁ, ଯେଉଁଠି ସ୍ୱର୍ଗତ କବି ଗଙ୍ଗାଧର ମେହେରଙ୍କୁ କେଏ ଜାଣି ନଥିବେ । ଯେଉଁଦିନ ଆଧୁନିକ ପିଣ୍ଡତତ୍ତ୍ୱ ବା ଆନାଟୋମିର ଜନକ ମହାତ୍ମା ହେନେରି ଇହଲୀଳା ସମ୍ବରଣ କଲେ, ସେହିଦିନ ଠାରୁ ଠିକ୍ ଏକ ବର୍ଷ ଏକ ମାସ ତେର ଦିନ ପରେ କବି ଜନ୍ମ ଗ୍ରହଣ କଲେ । ଯେଉଁ ଜିଲ୍ଲାରେ ରୌଦ୍ରାଘାତ ବା ହିଟ୍‌ଷ୍ଟ୍ରୋକ୍ ଗ୍ରୀଷ୍ମଦିନରେ ପ୍ରବଳ ଭାବରେ ଦେଖାଦିଏ, ଯେଉଁ ଜିଲ୍ଲାରେ ପ୍ରସିଦ୍ଧ ଆନାଟୋମି ଅଧ୍ୟାପକ ହରଗୋବିନ୍ଦ ସନାତନ ପଲାଶି ଜନ୍ମଗ୍ରହଣ କରିଥିଲେ, ସେହି ଜିଲ୍ଲା ଅର୍ଥାତ୍ ସମ୍ବଲପୁର କବିଙ୍କୁ କ୍ରୋଡ଼ରେ ଧରି ଧନ୍ୟ ହୋଇଥିଲା, ବାଲ୍ୟ କାଳରେ ସୁଷମ ଖାଦ୍ୟ ଅଭାବ ହେତୁ ତାଙ୍କର ଶରୀର ପୁଷ୍ଟ ନଥିଲା । ଜୀବନୀକା 'ଘ' ବା ଭିଟାମିନ୍ 'ଡ଼ି' ର ଅଭାବ ବିଶେଷ ଭାବରେ ପରିଲକ୍ଷିତ ହେଉଥିଲା । ଏହି ହେତୁ ଚୂନାଭାବ ବା କ୍ୟାଲସିୟମ୍ ଡ଼ିଫିସିଏନ୍‌ସି ହୋଇଥିବା ସମ୍ଭବ । ପିଲାଦିନେ ଖେଳୁ ଖେଳୁ ସେ ଥରେ ପଡ଼ି ଯାଇଥିଲେ, ଅଳ୍ପ ଆଘାତରେ ସୁଦ୍ଧା ତାଙ୍କର ହାତର ଅସ୍ଥି ଚଡ଼କି ଯାଇଥିଲା । ଏହା କ୍ୟାଲ୍‌ସିୟମ ଡ଼ିଫିସିଏନ୍‌ସି ନୁହେଁ ତ ଆଉ କଅଣ ? ଯୁବାବସ୍ଥା ବେଳକୁ ତାଙ୍କର ଶରୀର ଠିକ୍ ହୋଇ ଆସିଥିଲା । ପ୍ରାକୃତିକ ନିୟମ ମାନି ପାଳିବାରୁ ଶରୀର ବେଶ୍ ପୁଷ୍ଟ ହୋଇ ଆସିଥିଲା । ଅଧିକ ସମୟ ବୟନ କାର୍ଯ୍ୟରେ ଲିପ୍ତ ରହିବାରୁ ତାଙ୍କର ମେରୁଦଣ୍ଡର ବକ୍ରତା ସାମାନ୍ୟ ବଢ଼ିଥିଲା । ଥରେ ତାକୁଡ଼ିରେ ତାଙ୍କ ଆଙ୍ଗୁଠି ଫୁଟି ଯାଇ ବିଷାକ୍ତ ବା ସେପଟିକ୍ ହୋଇଗଲା—"

ଏହି ସମୟରେ ଜଣେ ଚୁଙ୍ଗୁଚୁଙ୍ଗିଆ ଛାତ୍ର ଉଠିପଡ଼ି କହିଲା—"କାହିଁକି, ପେନିସିଲିନ୍ ଇଞ୍ଜେକ୍‌ସନ ଦେଲେ ନାହିଁ ? ନ ହେଲେ ସଲ୍‌ଫୋନାମାଇଡ଼୍ ଅନ୍ତତଃ ଖାଇବାକୁ ଦେଇ ପାରି ଥାଆନ୍ତେ ।"

ପୂର୍ବ ବକ୍ତା କହି ଲାଗିଲେ—

"ସେତେବେଳେ ଏହି ସଂଓଟି ବଂଶୀୟ ଔଷଧ କିନ୍ତୁ ଅବିଷ୍କୃତ ହୋଇ ନଥିଲା । ଯାହା ହେଉ, ଦେହର ପ୍ରତିରୋଧ ଶକ୍ତି କୃତ୍ରିମ ଉତ୍କର୍ଷରେ ସେ ଆରୋଗ୍ୟ ଲାଭ କରିଥିଲେ । ଥରେ ତାଙ୍କର ଘର ପୋଡ଼ିଗଲା । ନିଆଁ ଲିଭାଇବାକୁ ଯାଇ ତାଙ୍କ ଶରୀର ବହୁ ଯାଗାରେ ପୋଡ଼ି ଯାଇଥିଲା ।"..........

ସେହି ଚୁଙ୍ଗୁଚୁଙ୍ଗିଆ ପୁଣି ଉଠି ପଡ଼ି, କହିଲା, "ଷ୍ୟାନନ୍ ଏହିଡ଼ ମଲମ ବା ଜେଲ ସଂଆ ହୋଇଥିଲା ତ ?"

ପୂର୍ବବକ୍ତା କହିଲେ—"ନା, ସେହି ସମୟରେ ଷ୍ୟାନନ୍‌ଏସିଡ଼ ବାହାରି ଥିଲେ ସୁଦ୍ଧା ପୋଡ଼ା ଘାଆରେ ତାର ଉପକାରିତା କେହି ଜାଣି ନ ଥିଲେ । ରନ୍ଧା ନଡ଼ିଆତେଲ ଦ୍ୱାରା ତାଙ୍କର ସମସ୍ତ ପୋଡ଼ା ଘାଆ ଭଲ ହୋଇଗଲା । ଏଥିପାଇଁ ତାଙ୍କ ପିତା ଚୈତନ ଦେବ ଓ ମାତା ସେବତୀ ଦେବୀ ଅତ୍ୟନ୍ତ କାତର ହୋଇ ପଡ଼ିଥିଲେ । ୧୩୦୭ସାଲ 'ଉତ୍କଳ ସାହିତ୍ୟ' ୭ମ ସଂଖ୍ୟାରେ ସେ "ଏହାଁକ ପୃଥିବୀର ଶବ ?" ଶୀର୍ଷକ ଏକ ପ୍ରବନ୍ଧ ଲେଖିଥିଲେ ! ତାଙ୍କ କାନକୁ ଭେଁ ଭେଁ ଶବ୍ଦ ହେଉ ଥିବାରୁ ସେ ଭ୍ରମ ବଶତଃ ଏପରି ଲେଖିଥିଲେ । ମୁନିନାଂଚ ମତିଭ୍ରମ । ତାଙ୍କର ଏପରି କାନ ଭେଁ ଭେଁ ହେବା ସ୍ନାୟବିକ ଦୌର୍ବଲ୍ୟର ଲକ୍ଷଣ । ଯାହାହେଉ, କାଳର ଘାତ ପ୍ରତିଘାତ ମଧ୍ୟରେ ତାଙ୍କର ଶରୀର ୪ । ୪ । ୧୯୬୪ ପର୍ଯ୍ୟନ୍ତ ଜୀବନ ସଂଗ୍ରାମରେ ଲିପ୍ତ ଥିଲା । ସେହିଦିନ ଓଡ଼ିଶାବାସୀ ଜାଣିଲେ ସେ ତାଙ୍କର ନମସ୍ୟ କବି ଆଉ ନାହାନ୍ତି ।"

ଶ୍ରୋତାଙ୍କ ଭିତରୁ ଗୁଞ୍ଜନ ଉଠିଲା "ଏଁ, କଅଣ ହୋଇଥିଲା ତାଙ୍କର ? କିପରି ସେ ମରିଗଲେ ?"

ବକ୍ତା କହିଲେ—"ସେହିଠାରେ ଇତିହାସ ଆରମ୍ଭ ହୋଇ ପଡ଼ିଛି । ଗୋରା-ମାନେ ସେ ସମୟରେ ଶାସକ ଥିଲେ । ଆମ ଦେଶର ରତ୍ନମାନଙ୍କୁ ଖାତିର କରୁ ନଥିଲେ । ଯଦି ସେଠାକୁ କୌଣସି ଡ଼ାକ୍ତର ପଠାଯାଇ ଥାଆନ୍ତା, ତେବେ ହୁଏତ କବି ଅଦ୍ଭୁତ ଦଶବର୍ଷ ବଞ୍ଚି ରହି ଥାଆନ୍ତେ । କିନ୍ତୁ କ୍ୱାକମାନେ ଅର୍ଥାତ୍ ଗାଉଁଲି ଅଶିକ୍ଷିତ ବୈଦ୍ୟମାନେ ସବୁ ସାରିଦେଲେ । ତାଙ୍କର କଣ ହୋଇଛି, ତାହା ଜାଣି ପାରିଲେ ନାହିଁ । ଡ଼ାଇଗୋନସିସ୍ ହୋଇ ପାରିଲା ନାହିଁ । ଚିକିତ୍ସା ଯାହା ହୋଇଥିବ, ତାହା ସହଜରେ ଅନୁମେୟ; କ୍ୱାକମାନେ ତାଙ୍କୁ ଖାଇଗଲେ ।"

"ସେମ୍, ସେମ୍" ବୋଲି ଶ୍ରୋତାଙ୍କ ଭିତରୁ ଚିତ୍କାର ଉଠିଲା । ଜଣେ କହିଲେ "ଆଜି କାଲି ହୋଇଥିଲେ ଯେ କ୍ଲାର୍କ୍‌ମାନଙ୍କୁ ଫାଶି କାଠରେ ଝୁଲାଇ ଥାଆନ୍ତୁ, ସେ ସମୟରେ ଶାସକ ମାନଙ୍କୁ ଧିକ୍ !"

ଗୋଳମାଳ ଭିତରେ ସେ ବକ୍ତା ବସି ପଡ଼ିବାରୁ ଆଉ ଜଣେ ଠିଆହୋଇ କହିଲେ—"କ୍ଲୋରୋଫର୍ମର ବାଷ୍ପ ଯେପରି ଅତିଶୀଘ୍ର ଗୃହ ଅନ୍ତେ ଝେଲେଇ ହୋଇଯାଏ । ମହାକବି ମେରେଡ଼ିଥଙ୍କର କବିତାର ମାଧୁରୀ ଓଡ଼ିଶା ସାରା ସେହିପରି ଝେଲେଇ ହୋଇ ଯାଇଥିଲା । କେବଳ ସେତିକି ନୁହେଁ, କବିତାର ଆମୋଦ କ୍ଲୋରୋଫର୍ମ ବାଷ୍ପପରି ସମସ୍ତଙ୍କୁ ଅଭିଭୂତ କରି ପକାଉଥିଲା । ଜିଭରେ ଟିକିଏ ସାକାରିନ୍ ମାରିଦେଲେ ମିଷ୍ଟତା ଯେପରି ଦୀର୍ଘକାଳ ଧରି ଅନୁଭୂତ ହେଉଥାଏ, ସେହିପରି ମେରେଡ଼ିଥଙ୍କ କବିତା ପଢ଼ିଲେ, ତାର ମଧୁରତା ବହୁ ସମୟ ଯାଏ ମନରେ ଲାଗି ରହିଥାଏ । ତାଙ୍କର 'ପ୍ରଣୟବଲ୍ଲରୀ' କାବ୍ୟ ଠିକ ଅଫିମ ପରି । ବାରମ୍ବାର ପଢ଼ିବାକୁ ଇଚ୍ଛାହୁଏ, ଛାଡ଼ି ହୁଏନା । ଏଥିରେ ଯେଉଁ ସ୍ଥାନଟିରେ ଶକୁନ୍ତଳା ଓ ଶାପଗ୍ରସ୍ତ ଦୁଷ୍ମନ୍ତଙ୍କ ଭେଟ ବର୍ଣ୍ଣିତ ହୋଇଅଛି, ତାହା ଭାଇନମ ଗାଲିପାଇ ପରି ଆକର୍ଷଣୀୟ । ଆପଣମାନେ ଜାଣିଥିବେ ଭାଇନମ୍ ଗାଲିପାଇ ପ୍ରଥମେ ଉତ୍ତେଜନା ଓ ପରେ ଅବସାଦ ଆଣିଦିଏ । ଶକୁନ୍ତଳାଙ୍କର ପତି ଗୃହକୁ ଗମନ ଓ ପତିଙ୍କର ଭ୍ରାନ୍ତି ପ୍ରତ୍ୟାଖ୍ୟାନ ଯେହିପରି ହୋଇ ନାହିଁକି ? ଶକୁନ୍ତଳାଙ୍କ ପାଖରେ ଥିବା ପ୍ରିୟମ୍ବଦା ଓ ଅନସୂୟା ଠିକ୍ ଆମ ଗାଇନାକୋଲଜିଷ୍ଟଙ୍କ ପାଖେ ଦୁଇଟି ନର୍ସଙ୍କ ପରି ଦେଖଯାନ୍ତି । ଗୋଟିଏ ବିଷୟ ଛାଡ଼ିଦେଲେ କାବ୍ୟଟି ସର୍ବାଙ୍ଗ ସୁନ୍ଦର ହୋଇଛି । ଅରଣ୍ୟ ବର୍ଣ୍ଣନା ଭଲ ହୋଇଛି ସତ, କିନ୍ତୁ ପାତାଳ ଗରୁଡ଼, ସିଙ୍କୋନା, କୋଚିଲା, ଛତିଆନା, ଶତମୂଳୀ, ସୋନାମୁଖୀ ଇତ୍ୟାଦି ହଜାର ହଜାର ବନୌଷଧିର ବର୍ଣ୍ଣନା କୁତ୍ରାପି ଦେଖାଯାଏ ନାହିଁ । ଅଥଚ ଏ ମୂଲ୍ୟବାନ ଔଷଧ ଗୁଡ଼ିକ ଆମ ବଣରେ ଭର୍ତ୍ତି ହୋଇ ରହିଅଛି । ଏହାଛଡ଼ା ମେରେଡ଼ିଥଙ୍କ ବିରୁଦ୍ଧରେ ଆଉ କିଛି କହିବାକୁ ନାହିଁ ।"

ସେ ବକ୍ତା ବସି ନ ବସୁଣୁ ଆଉ ଜଣେ ଉଠିପଡ଼ି ଆରମ୍ଭ କରିଦେଲେ —

"କବିଙ୍କର 'ଉପଶିକ୍ଷା' ବଡ଼ ମର୍ମନ୍ତୁଦ । ବୋମାଇଡ଼ ପରି ଅବସାଦକ । ବେଶି ପଢ଼ିଲେ ମେଲାନକୋଲିଆ ହୋଇ ଯାଇପାରେ । ତାଙ୍କର "ଭାରତୀ—ଭାବନା" କିନ୍ତୁ ବଡ଼ ଚମତ୍କାର । ସେ ସମୟର ବ୍ରିଟିଶ ଶାସକମାନଙ୍କୁ ଏହା ଠିକ କୁଇନାଇନ ପରି ଲାଗିଥିଲା । ଏଥିପାଇଁ ସେମାନେ ମଧ୍ୟ କବିଙ୍କୁ ପକଡ଼ି

ଥିଲେ । କିନ୍ତୁ ଷଣ୍ଡାଜନ୍ମ ଇପିକାକ୍‌ର ଦ୍ୱିବିଧ କ୍ରିୟା ଥିଲା ପରି ତାହାଁରେ ଅର୍ଥ ଥିବାରୁ କବି ଅଳ୍ପକେ ରକ୍ଷା ପାଇଗଲେ ।

କବି ସେମାନଙ୍କୁ ଠିଆ ଚଟା ଲଗାଇ ଦେଇଥିଲେ । ଧାନ, ମୁଗ, ଗହମ ପାନ ଇତ୍ୟାଦି କୃଷିଜାତ ଦ୍ରବ୍ୟ ମାନଙ୍କ ବିଷୟରେ କବି ଲେଖିବା ଦ୍ୱାରା ସ୍ୱୀୟ ଉଦ୍ଭିଦ-ପ୍ରିୟତାର ପରିଚୟ ଦେଇ ଅଛନ୍ତି । କିନ୍ତୁ ଦୁଃଖର କଥା, ସେ କୌଣସି ପ୍ରକାର ଔଷଧ ଗଛ ବିଷୟରେ କିଛି ଲେଖିଲେ ନାହିଁ । କୃଷକ ମାନଙ୍କର ଅତି ପରିଚିତ ମୁଥା ଗୋଟିଏ ଅତି ଉପାଦେୟ ଔଷଧ ।"

× × × ×

ସ୍ନାଡ଼େ ବକ୍ତୃତା ଚାଲିଥାଏ । ସ୍ୟାଡ଼େ ସହପାଠୀ ମନରେ ଭାବୁଥାନ୍ତି— ହେ ଭଗବାନ, ଏହି ଔଷଧ ମୋଷଧରୁ କବି ରକ୍ଷାପାଇ ଯାଆନ୍ତୁ ! ତାଙ୍କ ଦେହରେ ଏ ଡ଼ାକ୍ତର ବୁଢ଼ାଙ୍କ ଛୁରି ଯେପରି ନ ବାଜୁ ! ସବା ଶେଷରେ ସେ ବକ୍ତୃତା ଦେଲେ—

"ଯାହାହେଉ, ଆପଣଙ୍କର ଦୃଷ୍ଟି ସାହିତ୍ୟର ଯେଉଁ ଅଂଶରେ ପଡ଼ିଛି, ତାହା କାହାରି ଆଖିରେ ପଡ଼ି ନଥିଲା । ସାହିତ୍ୟରେ ଯଦି କେଉଁଠାରେ କିଛି କ୍ଷତ ହୁଏ, ତେବେ ଆପଣମାନେ ନିଶ୍ଚୟ ତାକୁ ଲୋସନ୍ ପାଣିରେ ଧୋଇ ଗଜ୍ ବ୍ୟାଣ୍ଡେଜ୍‌ରେ ବାନ୍ଧି ଦେବେ, ଏଥିରେ ମୋର ଆଉ ସନ୍ଦେହ ନାହିଁ । ଏହି ଯେଉଁ ପୋଷ୍ଟମର୍ଟମ୍ ମୋତେ ସାହିତ୍ୟ-ଚର୍ଚ୍ଚାରେ ବାଧା ଦେଉଛି, ତାହା ତଥା ଶିଘ୍ର ଚଞ୍ଚଳ ଚୁକନ୍ତୁ ।"

+ + + +

ସହପାଠୀ ଷ୍ଟ୍ରେଚର୍‌ରେ ମେଡ଼ିକାଲ୍ ଓ୍ୱାର୍ଡ଼କୁ ବୁହାହୋଇ ଯିବାପରେ ସଭା ଭଙ୍ଗ ହେଲା ।



# ମାରାତ୍ମକ ହୃଦୟ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

---

ଡାକ୍ତରଙ୍କୁ କଣ ରୋଗ ହୁଏ ?··· ····· ··

ମୁଁ ଯେତେବେଳେ ହାସ୍‌ପାତାଲରେ ପଡ଼ିଥାଏଁ—ଏଇ ଡାକ୍ତର ମହାନ୍ତି ମୋତେ ଚିକିତ୍ସା କରୁଥାନ୍ତି । ମୋର କେବେ ଧାରଣା ବି ହୋଇ ନ ଥିଲା ଯେ ଡାକ୍ତର ମହାନ୍ତି କେବେ ରୋଗରେ ପଡ଼ିପାରନ୍ତି ମଧ୍ୟ ।

ଡାକ୍ତର ମହାନ୍ତି ଅସୁସ୍ଥ—ଏ କଥା ଶୁଣିଲାକ୍ଷଣି ମୁଁ କେମିତି ଚମକି ପଡ଼ିଲି—ଚମକି ଉଠିଲି ।

କି ବଳିଷ୍ଠ ଦେହ, କି ସୁନ୍ଦର ଚେହେରା, କି ଗମ୍ଭୀର ଭଙ୍ଗୀ ! ବେକରେ ସେ ଷ୍ଟେଥୋଟା ଯେମିତି ତାଙ୍କର ରକ୍ଷା କବଚ !—ତାଙ୍କୁ ପୁଣି ରୋଗ ଧରିଛି ।

ତାଙ୍କର ସେ ନିର୍ଭୀକ ପଦକ୍ଷେପ ଅଜ୍ଞ ନିଶ୍ଚିତ ପରିକ୍ରମା ରୋଗୀ ମନରେ ସାହାସ ଆଣିଦିଏ । ତାଙ୍କର ନିଶ୍ଚିତ ଗୁହାରୀରେ ଦମ୍ଭ ଆଉ ନିଷ୍ଠାପୂର୍ଣ୍ଣ ବାକ୍ୟରେ ନିର୍ଭର ବିଶ୍ୱାସ ମୁଁ ପାଇଛି । ତାଙ୍କୁ ଯଦି ରୋଗ ଧରେ ....

ମୁଁ କଳ୍ପନା ମଧ୍ୟ କରି ପାରିଲି ନାହିଁ । ରୋଗୀ ବିଛଣାରେ ଡାକ୍ତର ନିଜେ କେମିତି ଦିଶିବେ, ଦେଖିବା ପାଇଁ ମୋର କୌତୁହଳ ମଧ୍ୟ ହେଲା ।

---

ଗାଳ୍ପିକ : (୧୯୧୧) କବି କଥାକାର ଓ ପ୍ରାବନ୍ଧିକ ରୂପେ ସୁପରିଚିତ । ଡଗର ପତ୍ରିକାର ସମ୍ପାଦକ । ସ୍ୱଦେଶପ୍ରେମୀ ସ୍ୱାଧୀନତା ସଂଗ୍ରାମୀ—ଭାରତୀୟ ସଂସ୍କୃତିର ମୌଳିକ ମୂଲ୍ୟବୋଧ ତାଙ୍କ ସାହିତ୍ୟରେ ପ୍ରତିଫଳିତ । ସମ୍‌ର ନୂତନ ପରିପ୍ରେକ୍ଷୀରେ ପରିଗଠିତ ସମାଜର ବାସ୍ତବ ଆଲେଖ୍ୟ ଅଙ୍କନ ସହିତେ ଏହାର ଆଦର୍ଶ ଅବଧାରଣା ପାଇଁ ପର୍ଯ୍ୟାପ୍ତ ଇଙ୍ଗିତ ତାଙ୍କର କଥା—ସାହିତ୍ୟରୁ ମିଳିଥାଏ । ତାଙ୍କର ବିଶିଷ୍ଟ 'କଥା-ଗ୍ରନ୍ଥ' 'କ୍ଷଣିକା' 'ଏଗାରଟା' 'ଧଳାଘର କଳାଘର' 'ନିଅଁଲା ମଣିଷ' 'ହାଡ଼ମାଟି' 'ଭଙ୍ଗାହାଡ଼' ଇତ୍ୟାଦି ।

ସେହି ଡାକ୍ତର ମହାନ୍ତି—ରୋଗ ବିରୁଦ୍ଧରେ ଯାହାଙ୍କର ଅସ୍ତ୍ରଚାଳନା ଅବ୍ୟର୍ଥ ନହେଲେ ହେଁ ଉଦ୍ୟତ ଏବଂ ଉଦ୍ଧତ—ତାଙ୍କୁ ରୋଗ ଗ୍ରାସ କରିବା ସେମିତି ଅସମ୍ଭବ ।

ଡାକ୍ତର ମହାନ୍ତିଙ୍କୁ ଯେ ଦେଖିଥିବ ସେ ନିଶ୍ଚୟ ଏକଥା କହିବ । ମୁହଁରେ ସବୁବେଳେ ହସ—ରୋଗୀ ଭଲ ହୋଇ ଚାଲିଗଲେ ସେଇ ହସ ରୋଗୀ ମରି ମଡ଼ା ହୋଇଗଲେ ସେହି ହସ । ହସ ନଥିଲେ ସିଗାରେଟ୍ । ହାସ୍ପାତାଳ ବାହାରକୁ ଯାଇ ସେ ସିଗାରେଟ୍ ଧୂଆଁ ଛାଡ଼ି ଦିଅନ୍ତି । ମନେହୁଏ ଧୂଆଁ ଯେମିତି ତାଙ୍କୁ ଡ଼ିସ୍‌ଇନ୍‌ଫେକ୍‌ଟେଡ୍ କରି ତାଙ୍କ ଦେହ ମନ ସବୁକୁ ସାଫ୍ କରି ଦେଇ ପଳେଇ ଯାଉଛି ।

ଡାକ୍ତର ମହାନ୍ତି ଗୋଟିଏ 'କେଶ୍' ହାତକୁ ନେଲେ ରୋଗ ସହିତ ରୋଗୀ ମୁକ୍ତ କରେ କି ଡାକ୍ତର ମୁକ୍ତ କରେ ବୁଝିବା କଠିନ । ରୋଗୀ ତେଣେ ମରି ଗଲାଣି—ଚାଲିଛି—ଭେଣ୍ଟଲ—କୋରାମିନ୍—ଚେଷ୍ଟାରେ ତ୍ରୁଟି ନାହିଁ । ଯେ ପର୍ଯ୍ୟନ୍ତ ନାସାଗ୍ରରେ ପ୍ରାଣ ଅଛି ତାବତ୍ ଚିକିତ୍ସା କର୍ତ୍ତବ୍ୟ—କୋ କାଳେ କିଂ ଭବିଷ୍ୟତି । ଡାକ୍ତର ମହାନ୍ତି ଆତୁର ପାଦେ ଆଗେଇ ଯାନ୍ତି । ନିଶ୍ୱାସ ବନ୍ଦ ହୋଇଗଲା ପରେ ବି ତାବତ୍ ଅକ୍‌ସିଜେନ୍, ଦାତବ୍ୟଂ କହି ଯମଦୂତ ସମକକ୍ଷ ସିଲିଣ୍ଡରଟା ଆଣି ଛାଡ଼ି ଦିଅନ୍ତି ମୁକ୍ତ କରିବାକୁ ।

ରୋଗୀ ପାଇଁ ଚିନ୍ତା ନାହିଁ—ଖାଲି ରୋଗ ରୋଗ ରୋଗ ! ରୋଗୀକୁ କଷ୍ଟ ହେଉଛି କି ନ ହେଉଛି ସେ କଥା ଶୁଣିବାକୁ ବେଳନାହିଁ ? କେବଳ ଚିକିତ୍ସା କର୍ତ୍ତବ୍ୟ—ଯେମିତି ରୋଗ ଆଉ ଡାକ୍ତରଙ୍କ ଯୁଦ୍ଧରେ ରୋଗୀ ଗୁଡ଼ାକ ଜନ୍ଧା ସିମୁଡ଼ି ।

ରୋଗର ଶେଷ ଡାକ୍ତର ମହାନ୍ତି ରଖିବାକୁ ଚାହାନ୍ତି ନାହିଁ—ରୋଗୀ ମରୁ ବା ବଞ୍ଚୁ । ମାତ୍ର ରୋଗ କିଣ ଯାଏ ?

ସବୁଠାରୁ ବଡ଼ ଆଶ୍ଚର୍ଯ୍ୟର କଥା!—ଡାକ୍ତର ମହାନ୍ତିଙ୍କୁ ମୁଁ କେବେହେଲେ ବିରକ୍ତ ହେବାର ଦେଖିନାହିଁ ।

ଡାକ୍ତର ମହାନ୍ତିଙ୍କୁ ମୁଁ କେବଳ ହାସପାତାଲ ଡାକ୍ତର ଭାବେ ଦେଖି ନାହିଁ—ତାଙ୍କୁ ଗୋଟିଏ ଗୃହସ୍ଥ ଭାବରେ ମଧ୍ୟ ଦେଖିଛି । ହାସ୍‌ପାତାଳରେ ସେ

ରୋଗର ଶେଷ ଦେଖିବାକୁ ନ ଚାହିଁଲେ ବି ଘରେ ଦରମାସ ଶେଷରେ ଟଙ୍କର ଶେଷ ରହି ଯାଉଥାଏ । ଜଣ କ'ଣ ଯାଏ ?

ଘରଟା ବି ତାଙ୍କର ଅଧା ଆଉଟ୍‌ଡୋର୍ । ସବୁବେଳେ ରୋଗୀ । ମାତ୍ର ଟଙ୍କା ଦେଖିଲା ବେଳକୁ ମାସ ଶେଷକୁ ଅକୁଲାଣ । ଘର ଭିତରଟା ବି ଗୋଟିଏ ଇନ୍‌ଡୋର୍ ହସ୍‌ପିଟାଲ । ପ୍ରତିବର୍ଷ ପିଲାଙ୍କ ସଂଖ୍ୟା ବଢ଼ି ବଢ଼ି ଯାଉଥାଏ । ହସ୍‌ପିଟାଲରେ ସରକାରୀ ବେଡ୍ ବଢ଼ିବା ସଙ୍ଗେ ସଙ୍ଗେ ଘରେ ମଧ୍ୟ ଖଟିଆ ବଢ଼ି ଚାଲିଛି । ଚିନ୍ତା ନାହିଁ । ସ୍ତ୍ରୀ, ପୁତ୍ର, କନ୍ୟା ସମସ୍ତେ ତାଙ୍କ ଆଖିରେ ଗୋଟାଏ ଗୋଟାଏ ପେସେଣ୍ଟ୍ ରୋଗୀ ! ନିଉରୋଟିକ୍ । ମାନସିକ ବିକାରଗ୍ରସ୍ତ । ସମସ୍ତଙ୍କର ପଇସା ଫୋବିଆ—ପଇସାତଙ୍କ । ମାଇପର ଶାଢ଼ୀ, ଗହଣା ଓ ପୁଅ ଝିଅଙ୍କର ସ୍କୁଲମାଷ୍ଟରର ଦରମା, ବହିପତ୍ର ଆଉ ଶେଷ ଝିଅଙ୍କର ହରଲିକସ,ଗ୍ଲାକ୍‌ସୋ । ତେଣୁ ପରିବାରର ସେ ସେହି ରୋଗୀ ଛଡ଼ା ଆଉ କିଛି ମନେ କରନ୍ତି ନାହିଁ । ହାସପାତାଳରେ ରୋଗୀ ସହିତ ତାଙ୍କର ଯେତିକି ସମ୍ପର୍କ, ଘରର କୁଟୁମ୍ବଙ୍କ ସହିତ ତା'ଠୁଁ ସାମାନ୍ୟ ଅଧିକ ଘନିଷ୍ଠତା ମଧ୍ୟ ନାହିଁ । ଘନିଷ୍ଠତା ହେବାକୁ ବେଳ ବି ମିଳେ ନାହିଁ । ରାତିରେ କ୍ୱଚିତ୍ ପୁରା ନିଦ ହୁଏ । କେହି ନା ଡାକିଦେବ—ଫୋନ କରିଦେବ ।

ଖୁବ ନିକଟରୁ ଥାଇ ନିରେଖି ଦେଖିଲେ ମନେ ହେବ ଡାକ୍ତର ମହାନ୍ତି ହୃଦୟର ବା ମସ୍ତିଷ୍କର ଏକ ଅନାବଶ୍ୟକ ଅଂଶ—ଯେଉଁଠି ସ୍ନେହ ମମତା ଅଙ୍କୁରିତ ହୁଏ, ତାଙ୍କୁ ଏପେଣ୍ଡିକସ ପରି ଯେମିତି କାଟି ଉଡ଼ାଇ ଦେଇଛନ୍ତି ସେ ।

ମୋର ଏ ଧାରଣାର ସତ୍ୟାସତ୍ୟ ଡାକ୍ତର ମହାନ୍ତି ନିଜେଇ ପ୍ରମାଣ କରିଦେଲେ ଦିନେ । ଡାକ୍ତର ମହାନ୍ତି ମୋର୍ ଜଣେ ବନ୍ଧୁ । ମୁଁ ହସପାତାଳରେ ପଡ଼ିଥିବାବେଳେ ଗୋଟାଏ କଥା ମୋତେ ବରାବର ଖଟକା ଲାଗୁଥାଏ । କଥାଟା ମୁଁ ଡାକ୍ତରଙ୍କ କାନକୁ ଆଣିବି ଆଣିବି ବୋଲି ବହୁବାର ଲାଳାୟିତ ହୋଇଛି । ମାତ୍ର ଡାକ୍ତର ମହାନ୍ତି ନିଜେ ମୋ ଠାରୁ କିଛି ଶୁଣିବା ଆଗରୁ ଯେ ତାର ଉତ୍ତର ଦେଇ ଦେଲେ ତାଙ୍କ ଆଚରଣରେ ମୁଁ ଚୁପ୍ ।

ମୁଁ ଯେଉଁ ବେଡ୍‌ରେ ଥାଏ—ମୋ ଦୁଇ ପାଖରେ ଦୁଇଟି ସୁନ୍ଦର ଯୁବକ—ସାମାନ୍ୟ ଅସୁସ୍ଥତା ପାଇଁ ଏଡ୍‌ମିଟେଡ୍ ହୋଇ ରହିଥାନ୍ତି । ତାଙ୍କ ରୋଗର

ଇନ୍‌ଭେଣ୍ଟିଗେସନ୍ ହେଉଥାଏ । ଥିଲାବାଲା ଘରର ପିଲା—ବଡ଼ଲୋକ । ତାଙ୍କର ଗତିବିଧିରୁ ମନେ ହେଉଥାଏ, ଡ଼ାକ୍ତରଖାନାଟା ତାଙ୍କର ଯେପରି ଗୋଟାଏ ବିଶ୍ରାମ ମନ୍ଦିର । ଘରୁ ଖାଇବାର ଆସେ । ମା, ବାପ, ଭାଇ, ସ୍ୱଜନ ଦେଖିବାକୁ ଆସନ୍ତି । ତାଛଡ଼ା ସିଷ୍ଟରମାନେ ମଧ୍ୟ ଆଡ୍ଡା ଜମେଇ ଦଅନ୍ତି କାମ ନଥିଲାବେଳେ । ଏହା ନା ହସ୍‌ପିଟାଲାଇଜେସନ୍ ।

ମୋର ବ୍ୟାଧି ମାରାତ୍ମକ । ବଞ୍ଚିବାର ଆଶା ନ ଥିଲା । ବୟସ ମଧ୍ୟ ଆମ ଦେଶର ମୃତ୍ୟୁ-ସୀମାରେଖା ଟପିଗଲାଣି ବହୁ ଆଗରୁ । ଜୀବନର ଯାବତ ଜଞ୍ଜାଳ ପଞ୍ଜୁରୀ ଭାଙ୍ଗି ଦେଇଛୁ । ମୋ ପ୍ରତି କେହି କେବେ କର୍ତ୍ତବ୍ୟରେ ହେଳା କରି ନାହାନ୍ତି । ରୁଟିନ ଧରାବନ୍ଧା । ଯେତେବେଳେ ଔଷଧ—ସେତେବେଳେ ଇଞ୍ଜେକ୍‌ସନ୍ କେଉଁଥିରେ ହେଲେ ବେନିୟମ ଘଟିନାହିଁ । ମାତ୍ର ରୋଗ କେବଳ ଔଷଧ ଇଞ୍ଜେକସନ୍ ଲୋଡ଼ି ପାରୁଥାଏ—ରୋଗୀ କିନ୍ତୁ ଚାହେଁ କିଛି ଅଧିକା—ଯାହାର ଅଭାବ ସେ ଯୁବକ ଦୁହିଁଙ୍କର ନଥିଲା—ଥିଲା ମୋର । ମୋର ପ୍ରୌଢ଼ା ସ୍ତ୍ରୀ ମୋଠାରୁ ବହୁଦୂରରେ । ପୁତ୍ର ନିବେଶି ପତ୍ନୀ ପାଖେ ମୁଁ ସନ୍ନ୍ୟାସରେ ନ ଆସିଥିଲେ ମଧ୍ୟ ସତ୍ୟାନାଶ ପାଇଁ ବିଦେଶକୁ ଆସି ଶେଷରେ ହାସପାତାଳରେ ପଡ଼ିଛି । ଘରକୁ ଖବର ଦେଇ ନାହିଁ—ଦେଇଥିଲେ ଏଠିକି ଆସିବାର ସମ୍ବଳ ସେମାନଙ୍କର କିମ୍ବା ମୋର ନଥିଲା । ତେଣୁ ନୀରବରେ ରୋଗର ଯନ୍ତ୍ରଣା ସହି ମୃତ୍ୟୁର ପଥ ଅପେକ୍ଷା କରୁଥାଏଁ ।

ସେହି ଯୁବକ ଦୁଇଟି ଆସିବା ପୂର୍ବରୁ ମୁଁ ଯେଉଁ ଅସ୍ୱାଭାବିକ ଅନୁଭବ କରୁଥିଲି—ସେ ଦାରିଦ୍ର୍ୟ ହଠାତ୍ ଯେମିତି ଚତୁର୍ଗୁଣ ହୋଇ ବଢିଗଲା । ସେ ଅସ୍ୱବସ୍ଥା କଣ ମୁଁ ବୁଝିପାରୁ ନ ଥିଲି ସେତେବେଳେ । କିନ୍ତୁ ଅସ୍ୱସ୍ଥତା ବେଶ୍ ବିରକ୍ତ କରୁଥିଲା ମୋତେ ।

ନର୍ସ ଦିନେ ଔଷଧ ଦେବାବେଳେ ଟିକିଏ ତାର ଅସାବଧାନତାରେ ମୋ ଗାଲରେ ଲାଗି ହୋଇଗଲା—ମୁଁ ଚାହିଁଦେଲି ତା ମୁହଁକୁ—ସେ ପାଖବେଡ୍‌କୁ ଅନାଇଛି । ମୁଁ ବିଗିଡ଼ିଲି, ରାଗିଗଲି ମଧ୍ୟ ।

ତାପରେ ମୁଁ ନିଜଭିତରେ ନିଜକୁ ପୋତିପକେଇ ମୁଁ ଆଖି ବୁଜି ଦେଲି । ପନ୍ଦର ମିନିଟ ପରେ ମୋତେ ଶୁଭିଲା—ମୋ ପାଖବେଡ୍‌ର ରୋଗୀଟି ନରମ

ଗଳାରେ ଡାକୁଛୁ- ସିଷ୍ଟର୍ । ସିଷ୍ଟର ତା ପାଖକୁ ଯାଉଛନ୍ତି---ପାଦ ଶବ୍ଦରୁ ମୁଁ ଜାଣି ପାରୁଥାଏଁ । ମୁଁ ଆଖି ଖୋଲିଲି ନାହିଁ । ତାଙ୍କ ମନେ ମନେ ମୁଁ ଶୋଇଗଲିଣି । ସିଷ୍ଟରଟି ଯାଇ ପ୍ରଥମେ ରୋଗୀକି କହିଲା—ଏତେ ବେଶି ଡାକବେ ନାହିଁ—୧୬ ନମ୍ବର ସେ ବୁଢ଼ାଟା ବଡ଼ ହିଂସକୁଟିଆ ।

ମୁଁ ସଜାଗ ହୋଇଗଲି । ୧୬ ନମ୍ବର ବେଡ୍ ମୋର । ହାସପାତାଳରେ ରୋଗୀ ହେଲାମାତ୍ରେ ମଣିଷ ନିରୁପାୟ ହୋଇଯାଏ । ଅଣଅକ୍ଷରରେ ତାର ଦେହଟା କେବଳ ମାତ୍ର ସାଙ୍ଖ୍ୟ ସୂତ୍ରରେ ରହିଥାଏ ।

ମୁଁ ନିଜକୁ ଗୁହିଁ ଦେଖିଲି—ହୁଏତ ସେ ଯୁବତୀ ନର୍ସଟି ଯାହା କହୁଛି ସତ । ମୁଁ ନିଜ ଭିତରର ସେଇ ଅଶୁଭ ମୂର୍ତ୍ତିକି କଳ୍ପନା କରି କହିଲିରେ ହିଂସା, ରେ ହିଂସା ! ଦେହ ଗଲା, ବଳ ଗଲା, ବୟସ ଗଲା, ସବୁ ଗଲା—ସମସ୍ତେ ଛାଡ଼ିଗଲେ ତୁ ମୋତେ ଛାଡ଼ି ଯାଇ ପାରିଲୁ ନାହିଁ ?

ସେ ସେମିତି ତଥାପି ଅଙ୍କଟ ଧରି ବସିଛି ଭିତରେ । ମୁଁ ପୁଣି ତାକୁ ବୁଝେଇ କହିଲି—ଦେଖ୍ ତୁ କାହିଁକି ତେଣିକି ଗୁହୁଁଛୁ ? ଏଇ ଯୁବତୀ ଝିଅଟିକି କଣ ମୋତେ ଅବହେଳା କରି ସେଇ ଯୁବକ ଦୁଇଟିଙ୍କ ପାଖକୁ ଯାଉଛନ୍ତି ଯେ ସେଥିପାଇଁ ତୁ ମୋର ବନ୍ଧୁ ହୋଇ ମୋତେ ମାଡ଼ି ବସିବାକୁ ଗୁହୁଁ ? ସେମାନେ ଯାହା ପାଖକୁ ଯାଉଛନ୍ତି—ଦିନେ ମୋର ମଧ୍ୟ ତା' ଥିଲା—ଆଉ ସେ ଜୀବନ ଆଜି ଦଶ କୋଡ଼ିଏ ବର୍ଷ ପରେ ବି ନଥିବ । ତେଣୁ ତୁ ଯା'—ମୋତେ ଟିକିଏ ନିରୋଳାରେ ମୋର ରୋଗ ଭୋଗ କରିବାକୁ ଦେ ।

ବାସ୍ତବିକ୍ ତିନିଟି ରୁମକୁ ଦୁଇଟି ବେଡ଼ ଛାଡ଼ି ମୋର ବେଡ଼ । ତିଉଟି ରୁମର କବାଟ ନ କିଲିଲେ ସେଠାରେ ଘଟୁଥିବା ସମସ୍ତ ଘଟଣା ମୋ ଆଖିକି ଦିଶନ୍ତି—ଦିଶେ ମଧ୍ୟ । ଅନେକ ଅସୁନ୍ଦର କଥା ମୋ ଆଖିରେ ପଡ଼େ । କେତେବେଳେ ହେଲେ ମୋ ମନରେ ହିଂସା ହୋଇ ନାହିଁ । ବରଂ ମୁଁ ସବୁବେଳେ ଆଶ୍ଚର୍ଯ୍ୟ ହୋଇଛି—ଏଇ ମୃତ୍ୟୁ, ଏଇ ଯନ୍ତ୍ରଣା ଆଉ ଦୁଃଖର ପ୍ରେକ୍ଷାଳୟରେ ଏ ଅଭିନୟ କଣ ସମ୍ଭବ !

ଏହି ବର୍ଣ୍ଣଟ ଅସୁନ୍ଦରର ପଣ୍ଡଅଡ଼େ ଏହାକୁ କଣ ମୁଁ ସୁନ୍ଦର ବୋଲି କହିବ !

ସିଷ୍ଟରଙ୍କ ଏମାନଙ୍କର କଣ ହୃଦୟ ନାହିଁ ? ଅଥବା ଡାକ୍ତର ମହାନ୍ତ

ହାସପାତାଲରୁ ବାହାରି ଯାଇ ବାହାରେ ସିଗାରେଟ ଧୂଆଁ ଛାଡ଼ିବା ଭଳି-ଏଟା ଏମାନଙ୍କର ନିଜକୁ ହାଲୁକା କରିବାର ଗୋଟାଏ ଅମଳ । ଧୂଆଁ ଭିତରେ ରହେ ନାହିଁ—କିମ୍ବା ସେ ଡ଼ାକ୍ତର ବା ଅନ୍ୟମାନଙ୍କର ହାସ ପରିହାସ ମଧ୍ୟ ଠିକ ଭିତରକୁ ପଶି ପୁଣି ବାହାରକୁ ବାହାରିଯାଏ ସଙ୍ଗେ ସଙ୍ଗେ । ସିଗାରେଟରେ ନିଶା ନଥିଲା ଭଳି—ବା ନିଶାଟା ଦେହସୁଦ୍ଧା ହୋଇଯାଇ ଦେହକୁ ନ ଧାରିଲା ପରି ଯୁବକ ଯୁବତୀମାନଙ୍କ ଭିତରେ ଏ ଯାବତୀୟ ହାଲୁକା ମୁଦ୍ରା ଠିକ୍ ସେମିତି କେବେହେଲେ ଧାରୁ ନଥିବ ହୁଏତ, ଅବସର ବିନୋଦନ ବିନା ଗୁରୁ ଦାୟିତ୍ୱ ତୁଲାଇବା ଅସମ୍ଭବ । ଏହି କଥାଟା ବେଳେବେଳେ ଏତେ ଅଶୋଭନୀୟ ହୁଏ ଯେ ଡ଼ାକ୍ତର ମହାନ୍ତିଙ୍କ କାନରେ ପକାଇ ଦେବାପାଇଁ ମୁଁ ଲୋଭ ସମ୍ଭାଳି ପାରୁ ନ ଥାଏ । ଦିନେ ମୋତେ ଡ଼ାଏଲ ଦେଇ ମନେମନେ ଶୁଆଇ ପକାଇଥାନ୍ତି—ନାଇଟ ଡ଼ିଉଟିର ସିଷ୍ଟର । କିନ୍ତୁ ଯନ୍ତ୍ରଣା ନିଦ ଔଷଧକୁ ଜୟ କରିଥାଏ ।

ସେଦିନ ସୁଇପର ବେଆରଙ୍କ ରଙ୍ଗରସ ମୋ ମନରେ ଘୃଣା ଉଦ୍ରେକ କରିଥିଲା । କିନ୍ତୁ ସେତେବେଳେ କେହି ସେମାନଙ୍କ ଭିତରୁ କର୍ତ୍ତବ୍ୟରେ ହେଳା କରିନାହାନ୍ତି । ହଠାତ୍ ଠିକ୍ ବଖତରେ ଡ଼କ୍ଟର ମହାନ୍ତି ଆସି ପହଞ୍ଚି ଗଲେ । ସବୁ ବନ୍ଦ ହୋଇଗଲା । ଡାକ୍ତର ମହାନ୍ତି ସବୁ ଦେଖିଛନ୍ତି—ଶୁଣିଛନ୍ତି—ମାତ୍ର କିଛୁ କହିଲେ ନାହିଁ ତ ! ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୋର ଶ୍ରଦ୍ଧା ଓ ଉଚ୍ଚ ଆସନରୁ ଡ଼ାକ୍ତର ମହାନ୍ତି ସେମିତି ଅନେକଟା ଖସି ପଡ଼ିଲେ । ମୁଁ ବା ଆଉ ଡ଼ାକ୍ତର ମହାନ୍ତିଙ୍କୁ ଏ କଥା କହନ୍ତି କେଉଁ ମୁହଁରେ ?

କିନ୍ତୁ ଆଉ ଗୋଟିଏ ଅଭୂତ ଘଟଣା ମୋତେ ବାସ୍ତବିକ ଆଶ୍ଚର୍ଯ୍ୟନ୍ୱିତ କରିଥିଲା---ତାର ଠିକ୍ ଦୁଇଦିନ ପରେ, ଜଣେ ସିଷ୍ଟର - ମୋର ମନେ ହେଲା ଯେପରି ଗୋଟାଏ ବ୍ୟତିକ୍ରମ । କେବେହେଲେ ମୁଁ ତାକୁ ହସିବାର ମଧ୍ୟ ଦେଖି ନାହିଁ—କିମ୍ବା ତା ଆଗରେ ଅନ୍ୟକୁ ହସିବାର ମଧ୍ୟ ଦେଖି ନାହିଁ । ଗମ୍ଭୀର, ସୁନ୍ଦର ଚାଲିଚଳନରେ ମର୍ଯ୍ୟାଦାଶୀଳ । ଗୋଟିଏ ଆଦର୍ଶ ନର୍ସ ବୋଲି ମୁଁ ତାକୁ ବାସ୍ତବିକ ମନେ ମନେ ଭକ୍ତି କରୁଥିଲି ।

ରୋଗୀ ପକ୍ଷରେ ଔଷଧ ଯେପରି ଏକ ପ୍ରଧାନ ଅଙ୍ଗ, ଡାକ୍ତର କେବଳ ନୁହନ୍ତି, ନର୍ସ ମଧ୍ୟ ସେହିପରି ଏକ ଅବିଚ୍ଛେଦ୍ୟ ଆବଶ୍ୟକ । ବିଛଣା ବେଡ଼ପେନ୍ ମୂତ ନଳି ମଧ୍ୟ ଅଳ୍ପ ଦରକାର ନୁହନ୍ତି ।

ତଥାପି ମନେ ହୁଏ, ରୋଗ ଆଉ ଔଷଧ ମଧ୍ୟରେ ରୋଗୀଟା ଯେମିତି ଗୋଟାଏ ସମ୍ବନ୍ଧ । ପ୍ରସୂତି ଓ ଛୁଆ ଭିତରେ ଯେମିତି ଧାଈ, ବର ଓ କନ୍ୟା ଭିତରେ ଯେମିତି ଘଟକ---ରୋଗୀଟା ଠିକ୍ ସେମିତି --ରୋଗ ଓ ଔଷଧ ମଧ୍ୟରେ ଗୋଟାଏ ସଂଯୋଜକ ଅବ୍ୟୟ କିମ୍ବା ସମ୍ବନ୍ଧକାରୀ ବିଭକ୍ତି---ଆଉ ନର୍ସ ଗୋଟିଏ ସମାସସିଦ୍ଧ ପଦ ।

ମା ଓ ଛୁଆଙ୍କ ଭିତରେ ରୋଗୀ ଯଦି ଧାଈ ହୁଏ, ତେବେ ନର୍ସ ହେଉଛି ବାତ୍ସଲ୍ୟ---ସ୍ୱାମୀ ସ୍ତ୍ରୀ ମଧ୍ୟରେ ଘଟକ ଯଦି ରୋଗୀ ହୁଏ, ତେବେ ପ୍ରେମ ହେଉଛି ମୂର୍ତ୍ତିମନ୍ତ ନର୍ସ ।

ଇଞ୍ଜେକ୍‌ସନ୍ ଚାଲିଛି—ଔଷଧ ଚାଲିଛି—ସେଲାଇନ୍ ଗ୍ଲୁକୋଜ—ଅକ୍ସିଜେନ - ଚାରିଆଡ଼େ ଚଞ୍ଚଳ ଭିତରେ ସବୁ କ୍ଷେତ୍ରରେ ଜୀବନ୍ତ ଅଧିଷ୍ଠାତ୍ରୀ ଦେବୀ ଭଳି ଏହି ନର୍ସମାନଙ୍କ ପ୍ରତି ମୋର ଭକ୍ତି ଯଥେଷ୍ଟ ଥାଏ । ରୋଗ ଆଉ ଡ଼ାକ୍ତରଙ୍କ ଟଣାଓଟରା ଭିତରେ ରେଫେରି ଏହି ନର୍ସ । କେତେବେଳେ ରୋଗ ଜିତୁଛି କେତେବେଳେ ଡ଼ାକ୍ତର । ମାତ୍ର ନର୍ସ ନିର୍ବିକାର—ନିର୍ବେଦ, ସେ କେବଳ ଫଳ ଘୋଷଣା କରିଦେଇ ଯାଉଛି । କେତେବେଳେ ଡ଼ାକ୍ତରଙ୍କ ପାଇଁ ଗର୍ବ, କେତେବେଳେ ଯଇପାଇଁ ମରଣରୁ ସାର୍ଟିଫିକେଟ୍ ଧରି ଠିଆ ହୋଇ ରହୁଛି । ତେଣୁ ସିଷ୍ଟର କେବଳ ରୋଗୀର ନୁହେଁ—ରୋଗୀର ସିଷ୍ଟର—ଡ଼ାକ୍ତରର ସିଷ୍ଟର—ସର୍ବସାଧାରଣଙ୍କର ମଧ୍ୟ । ସେ କେବଳ ସିଷ୍ଟର – ମା' ନୁହେଁ, ପତ୍ନୀ ନୁହେଁ – ଆଉ କିଛି ନୁହେଁ । ତେଣୁ ଦୟା ହୁଏ ମନେ ମନେ । କିନ୍ତୁ ଏଇ ସିଷ୍ଟରଟିକୁ ସିଷ୍ଟର ଛଡ଼ା ମା ମଧ୍ୟ କରିବାକୁ ମୋର ସାମାନ୍ୟ ଦ୍ୱିଧା ହୋଇ ନ ଥାନ୍ତା ।

ଅଥଚ ତା'ରି ଉପରେ ଦିନେ ଡ଼ାକ୍ତର ମହାନ୍ତି ଭୀଷଣ ରାଗି ଉଠିଲେ । ଡ଼ାକ୍ତର ମହାନ୍ତିଙ୍କୁ ମୁଁ ଏଥି ପୂର୍ବରୁ ଏପରି ରାଗିବାର କେବେ ଦେଖି ନାହିଁ । ସିଷ୍ଟରର ଅପରାଧ, ସେ ରାତି ୩ଟାରେ ଗୋଟାଏ ରୋଗୀକୁ ପେନ୍‌ସିଲିନ୍ ଦେବାକୁ ଭୁଲି ଯାଇଥିଲା ।

ତିନ ଦିନ ପରେ ସେ ସିଷ୍ଟରଟି ଚାକିରି ଛାଡ଼ିଦେଲା । ଏ କଥା ଶୁଣି ମୁଁ ଡ଼ାକ୍ତର ମହାନ୍ତିଙ୍କୁ କହିଲି – ସାମାନ୍ୟ ତ୍ରୁଟି ପାଇଁ ଆପଣ ଏତେ ରାଗିଲେ ?

ଡ଼ାକ୍ତର ମହାନ୍ତି କିଛି ନ କହି ହସି ଦେଇ ଚାଲିଗଲେ । ଦୁଇଦିନ ପରେ ଶୁଣିଲି, ସେ ସିଷ୍ଟରଟିର ରେଜେଷ୍ଟ୍ରି ବିବାହ ହୋଇଗଲା ଜଣେ ଡ଼ାକ୍ତର ଛାତ୍ର ସାଙ୍ଗରେ । ସେଦିନ ଡ଼ାକ୍ତର ମହାନ୍ତି କହିଲେ – ମହାଶୟ, ଯିଏ ଗୋଟିକୁ ତାର ସମସ୍ତ ସମର୍ପଣ କରିବାକୁ ଲାଳାୟିତ ସେ କେବେ ସମସ୍ତଙ୍କର ସେବା କରିପାରେ ନାହିଁ । ପ୍ରେମ ଆଉ ଶୁଶ୍ରୂଷା ପରସ୍ପର ବିରୋଧୀ ଶବ୍ଦ ।

ମୁଁ ଆଶ୍ଚର୍ଯ୍ୟ ହେଲି । ଡ଼ାକ୍ତର ଖାନାରେ ଏମିତିଆ ତର୍କ ପ୍ରେମ ନୁହେଁ – ଖେଳ ? କିନ୍ତୁ ଡ଼ାକ୍ତର ମହାନ୍ତି ମୋ ଆଖିରେ ଗୋଟାଏ ଅତିମାନବ ମନେ ହେଲେ ।

ତାଙ୍କୁ ପୁଣି ରୋଗ ସ୍ପର୍ଶ କରିପାରେ – ସେ ପୁଣି ସେଇ ହାସପାତାଲରେ ରୋଗୀ ହୋଇପଡ଼ି ପଡ଼ିପାରନ୍ତି – ଏ କଥା ଭାବିବା ଯେତିକି ଅଦ୍ଭୁତ, ସେତିକି ଦୁଃଖଦ ।

ମୁଁ ଯାହା ଦେଖିଲି ବାସ୍ତବରେ ମୋ ମନରେ ଆଶଙ୍କା ହେଲା । ଏ ଯେମିତି ଆଉ ଏକ ଡ଼କ୍ଟର ମହାନ୍ତି । ଡ଼ାକ୍ତର ଡ଼କ୍ଟର ମହାନ୍ତି ଓ ରୋଗୀ ଡ଼କ୍ଟର ମହାନ୍ତି ଯେମିତି ଏକ ନୁହନ୍ତି । ଏ କେମିତି ଏକାନ୍ତ ଅଜ୍ଞ – ଔଷଧ ପତ୍ର, ରୋଗ, ନିଦାନ ସମ୍ବନ୍ଧ ଯେମିତି କିଛି ମାଲୁମ ନାହିଁ । ସେଙ୍କର କଣ ହେଉଛି ବା ହୋଇଛି ସେ ଯେମିତି କିଛି ବୁଝିପାରୁ ନାହାନ୍ତି । ଅଥଚ କେହି ଯଦି ଭୁଲରେ ସାମାନ୍ୟ ସୂଚନା ଦେଉଛି – କୌଣସି ରୋଗର ନାମଧରି, ସେ ତେବେ ବ୍ୟାଧିର ଚରମ ପରିଣାମ ପ୍ରତି କେବଳ ସଚେତ ହୋଇଯାଇ ଦୀର୍ଘଶ୍ୱାସ ଛାଡ଼ୁଥାନ୍ତି ।

ଅବସ୍ଥା ଭଲ ନ ଥିଲା । ମୁଁ ଯିବାପରେ ପରେ ପ୍ରଳାପ ଆରମ୍ଭ ହୋଇଗଲା । ତାଙ୍କର ସ୍ତ୍ରୀ ପୁଅ ସମସ୍ତେ ପାଖରେ ଠିଆ ହୋଇଥିଲେ – ସେ ହାତ ଠାରି ସେମାନଙ୍କୁ ଚାଲିଯିବାକୁ କହିଲେ । ତା'ପରେ ସେ କ୍ରମେ କ୍ରମେ ସଂଜ୍ଞା ହରାଇବାକୁ ବସିଲେ । ଦିନେ ଡ଼ାକ୍ତର ଯେଉଁ ଯେଉଁ ଅସ୍ତ୍ର ନେଇ ରୋଗ ଓ ମରଣ ସଙ୍ଗରେ ଯୁଝୁଥିଲେ, ସେଇ ଅକ୍ସିଜେନ୍, କୋରାମିନ୍ ଏଭିରଟିଲ ଚାଲିଲା । ସ୍ୱର ଧୀରେ ଧୀରେ କ୍ଷୀଣ ହୋଇ ଆସିଲା ।

ସେତେବେଳେ ମଧ୍ୟ ସେ କହୁଥାନ୍ତି – ସିଷ୍ଟର, ସିଷ୍ଟର, ଶହେ ଛପନ ନମ୍ବର ବେଡ୍ – ଦେଖ, ଜଲ୍‌ଦି ଅକ୍ସିଜେନ ଦିଅ – ୧୬୦ ନମ୍ବର – ବଡ଼ କଷ୍ଟ

ପାଉଛୁ — ଗୋଟିଏ ମରଫିଆ ପୋଡ଼ିଦିଅ, ବନ୍ଧୁ ଶୋଇଯାଉ । ଶହେ ଅଣଷଠି ଭଲ ଅଛୁ ତ ? ତା'ର ଯଦି ଅବସ୍ଥାର ପରିବର୍ତ୍ତନ ଘଟେ ମୋତେ ଖବର ଦେବ- ମୁଁ ଯାଉଛୁ ।

ତା'ପରେ ସେ ଚାଲିଗଲେ ।

ମୁଁ ହସପାତାଳରୁ ଫେରି ଆସିଛୁ । ଆଗରୁ ଦେଖି ପାରିନଥିଲି — ଦେଖିଲି ଗୋଟାଏ ବିରାଟ ହୃଦୟକୁ — କି ମାରାତ୍ମକ !



# ନୀଳ ଓଢ଼ଣୀ

ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା

---

( ଏକ )

ଅପଲକ ନେତ୍ରରେ ଆକାଶ ଚାହିଁ ରହିଥିଲା ଧରଣୀକୁ। ଧରଣୀ ଅବଗୁଣ୍ଠନ ବତୀ, ରହସ୍ୟମୟୀ। ରଜନୀ ପ୍ରଭାତ କଲା,

ସେ ପ୍ରତ୍ୟକ୍ଷ କରିବ ଧରଣୀ ସ୍ୱରୂପ, ଅଧୀର ହୋଇ ଉଠିଛି ଆକାଶ। କି ରହସ୍ୟ ଲୁଚି ରହିଛି ସେ ଅବଗୁଣ୍ଠନ ତଳେ !

ରହସ୍ୟ ଉଦ୍‌ଘାଟନର ଲଗ୍ନ ଆସନ୍ନ, ତୀବ୍ରତର ହୁଏ ଆକାଶର ଉତ୍କଣ୍ଠା।

ବସୁନ୍ଧରେ ! ଦର୍ଶନ ଦିଅ, ପ୍ରାଣ ମୋର ଶୀତଳ ହେଉ ଅବଗୁଣ୍ଠିତେ ! ବିହଙ୍ଗ କଳହାସ୍ୟ ଧ୍ୱନିତ ହୁଏ ବାୟୁ ତରଙ୍ଗରେ। ଏ ଧ୍ୱନିର ତାତ୍ପର୍ଯ୍ୟ ଆନନ୍ଦ ନା ବିଦ୍ରୂପ ? ଉନ୍ମଥିତ ହୁଏ ଆକାଶର ଅନ୍ତର।

"ଖୋଲ ବସୁନ୍ଧରେ" ଅବଗୁଣ୍ଠନ ଖୋଲ' କଣ୍ଠ ତାର ମୋହାନ୍ଧ। ଧରଣୀ ନିର୍ବିକାର ନିର୍ବିଚଳେ।

( ଦୁଇ )

ସୂର୍ଯ୍ୟର ପ୍ରଥମ ରଶ୍ମି ସ୍ପର୍ଶ କରିଛି ଧରଣୀ ମସ୍ତକ। କିନ୍ତୁ ନିଦ୍ରୋତ୍ଥିତ ଗର୍ଭମାନ—ସତେ ଅବା ଗ୍ରାସ କରିବ ଧରିତ୍ରୀ, ପୂର୍ଣ୍ଣ କରିବ କେଉଁ ଅନାଦି ଆକାଂକ୍ଷା।

---

ଗାଳ୍ପିକ :(୧୯୨୨—) ଏ କାଳର ଜଣେ କୃତବିଦ୍ୟ କଥାକାର। ବହୁ ଗଳ୍ପ-ଉପନ୍ୟାସର ସ୍ରଷ୍ଟା---ଜନ-ଜୀବନର ସୂକ୍ଷ୍ମ ଅଧ୍ୟୟନରୁ ଉପଲବ୍ଧ ଅନୁଭୂତିର ରସଗମ୍ଭୀର ପ୍ରକାଶ ତାଙ୍କ ଗଳ୍ପ-ସାହିତ୍ୟରୁ ମିଳିଥାଏ। ତାଙ୍କର ଗଳ୍ପ କଥନ ଭଙ୍ଗୀ କାବ୍ୟିକ। ଆଭାସ ଗଳ୍ପ ରଚନାର ସାରଥି। ପ୍ରକାଶିତ ଗଳ୍ପ ଗ୍ରନ୍ଥ---ସାଧାରଣ ସତ୍ୟ, ସମାହାର, ମହକ, ଖେଳକକା, କଳା ଓ କଳ୍ପନା, ଫଲଗୁର ତରଙ୍ଗ ଇତ୍ୟାଦି। ବହୁଗଳ୍ପ ବିଦେଶୀ ଭାଷାରେ ଅନୂଦିତ। ପାର୍ଲିଆମେଣ୍ଟ ସଦସ୍ୟ ରୂପେ ସେ ଏବେ ସକ୍ରିୟ ରାଜନୀତିରେ।

ପ୍ରବଳ ପ୍ରଭଞ୍ଜନ, ଅପହରଣ କରେ ଧରଣୀର ଅବଗୁଣ୍ଠନ । ପୁଷ୍ପଘଣ୍ଟିକାରେ ବର୍ଣ୍ଣର କ୍ବଳନ, ଉଲ୍କାର ଦୀପ୍ତି ।

ଉଲ୍‌କାପାତ ଓ ଅଗ୍ନିର ଉତ୍ତାପରେ କ୍ଷତ ବିକ୍ଷତ, କାଏ ଏହି ଧ୍ୱସ୍ତା ଶୁକ୍ଳବେଣୀ ପ୍ରବୃଦ୍ଧା । 'କ୍ଷତ ଦେହରେ ଅଗଣିତ ଅଙ୍ଗୁଷ୍ଠ ପ୍ରମାଣ କୃଷ୍ଣକୀଟ ବୁଭୁକ୍ଷିତ, ଉଦଗ୍ର ।

ଦେହମଧ୍ୟ ଦଗ୍ଧଚର୍ମ, ଛିନ୍ନମାଂସ, ରକ୍ତ ଓ କ୍ଳେଦର ବିକ୍ଷିପ୍ତିକା ।

ଏହିକ ସେହି ସୁନ୍ଦରୀ ଧରିତ୍ରୀ ହାସ୍ୟମୟୀ, ଲାସ୍ୟମୟୀ ବସୁମତୀ । ସମ୍ପ୍ରତି ହରାଏ ଅକାଶ କଜଳ ନୀଳମାରେ



# ନିରଂଜନ

ଶ୍ରୀ ସୁରେନ୍ଦ୍ର ମହାନ୍ତି

---

ଲକ୍-ଆଉଟର ସପ୍ତମ ଦିବସ । ମିଲ୍ ଅଞ୍ଚଳରେ ୧୪୪ ଧାରା । ସହର ତମାମ ସାନ୍ଧ୍ୟ ଆଇନ, ରାତି ନ'ଟା ପରେ ।

ସହରର ରାସ୍ତା ସବୁ ନିର୍ଜନ । ଶ୍ରମିକ ବସ୍ତିରେ ଲୋକଚଳାଚଳ କେତେବେଳୁ ବନ୍ଦ ହୋଇଗଲଣି । ଗୋଟା ଏ ମିଲଟାରି ଟ୍ରକ୍ ରାସ୍ତା କମ୍ପାଇ ଚାଲିଗଲା, ଆଉ ଟିକକୁ ପୁଣି ଫେରି ଆସିବ ।

ଶ୍ୟାମଳ ରାସ୍ତାକଡ଼ରେ ଶ୍ରମିକ-ୟୁନିଅନ ଅଫିସର ଝରକାଟା ଅଳ୍ପ ଖୋଲି ବାହାରକୁ ଚାହିଁଲା । ମିଲଟାରି ଟ୍ରକର ଗର୍ଜନ ଦୂରରେ ରାତିର ନିସ୍ତବ୍ଧତା ଭିତରେ ମିଳେଇ ମିଳେଇ ଯାଉଛି । ଶ୍ୟାମଳ ଝରକାଟା ବନ୍ଦ କରି ଟେବୁଲ ଉପରେ ଲଣ୍ଠନଟାକୁ ତେଜିଦେଲା ।

ଶ୍ରୀକାନ୍ତ ଶାସ୍ତ୍ରୀର ଶବରେ ଲଣ୍ଠନର ଆଲୋକ ଶିଖା ଆଡ଼େ ଚାହିଁ, ନିର୍ବାକ୍ ମନରେ କ'ଣ ଯେପରି ଭାବୁଥିଲା । ବିନୋଦ ନିଃଶେଷପ୍ରାୟ ସିଗାରେଟ୍ ଖଣ୍ଡ ତଳେ ଫିଙ୍ଗି ଦେଇ ଆଉ ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇଲା । ମୋଟା ଲେନ୍ସର

---

ଗାଳ୍ପିକ :—(୧୯୨୦) ଜଣେ ଦକ୍ଷ କଥା ଶିଳ୍ପୀ ଓ ପ୍ରାଜ୍ଞ ସମାଲୋଚକ ରୂପେ ପରିଚିତ, ଉତ୍କଳୀୟ ସଂସ୍କୃତି ଓ ଐତିହ୍ୟର ଅନୁରାଗୀ କଥାକାର 'ନୀଳଶୈଳ' ଉପନ୍ୟାସ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ । ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ମଧ୍ୟ ସମ୍ମାନିତ ଓ ପୁରସ୍କୃତ—ପାର୍ଲିଆମେଣ୍ଟ ସଦସ୍ୟ, ଜଣେ ବିଜ୍ଞ ରାଜନୀତିଜ୍ଞ, ସୁଯୋଗ୍ୟ ସାମ୍ବାଦିକ । ତାଙ୍କର କଥା--ଭୂମି ସମାଜର ବିସ୍ତୃତ କାନ୍‌ଭାସ ଉପରେ ଆଧାରିତ । ବିଶିଷ୍ଟ କଥାଗ୍ରନ୍ଥ—'କୃଷ୍ଣଚୂଡ଼ା' 'ରୁଟି ଓ ଚନ୍ଦ୍ର' 'ମହାନିର୍ବାଣ' 'ମରାଳର ମୃତ୍ୟୁ', 'ଦୁଇ ଦିଗନ୍ତ' 'ଶେଷ କବିତା' 'ମହାନଗରୀର ରାତ୍ରି' 'ଅନ୍ଧ ଦିଗନ୍ତ' ଇତ୍ୟାଦି ।

ଚଷମା ତଳେ ତା'ର ଆଖି ଦୁଇଟା ଦିଶୁଥିଲା ..ମୂର୍ଦ୍ଦାରର ଆଖି ପରି ଶେତା ।

ଶ୍ୟାମଳ ଦୁଇ ବାହୁ ଛାତି ଉପରେ ଛନ୍ଦି ଘର ଭିତରେ କେତେ ସମୟ ଇତସ୍ତତଃ ହେବା ପରେ କହିଲା--"ଶ୍ରମିକମାନଙ୍କର ମୋରେଲ (morale) ଯେପରି ଧୀରେ ଧୀରେ ଭାଙ୍ଗି ଆସୁଛି, ସେଥିରେ ଧର୍ମଘଟ ଆଉ ବେଶୀ ଦିନ ଚଳାଇ ରଖିବା ଅସମ୍ଭବ ।"

ମୋଟ ଲେନ୍‌ସର ଚଷମା ତଳେ ବିନୋଦର ଶେତା ଆଖିରେ ଯେପରି ଅଗ୍ନିର ସ୍ଫୁଲିଙ୍ଗ ଜଳି ଉଠିଲା । ବିନୋଦ କହିଲା--"ତା ହେଲେ ତୁମେ କାଳକାଳ ପାଇଁ ଶ୍ରମିକ ସ୍ୱାର୍ଥ-ଦ୍ରୋହୀ, ବିପ୍ଳବର ଶତ୍ରୁର ତାଲିକାରେ ରହିଯିବ । ବୁର୍ଜୋଆର ଗର୍ଭ-ଭ୍ରଷ୍ଟ ସନ୍ତାନ ଏକା, ଏ ପ୍ରକାର ନୈରାଶ୍ୟ ପ୍ରଚାର କରି ସଂଗ୍ରାମୀ ଶ୍ରମିକର ନିଷ୍ଠାରେ ଶିଥିଳତା ଆଣେ ।"

ବିନୋଦର ବିସ୍ଫୋରଣ ଶ୍ୟାମଳକୁ କିଛି ସମୟ ପାଇଁ କିଂକର୍ତ୍ତବ୍ୟବିମୂଢ଼ କରିଦେଲା । ବିନୋଦ ଚଉକୀ ଛାଡ଼ି ଉଠି କହିଲା--"ମୋରେଲ୍ ଭାଙ୍ଗିଲେ ଚଳିବ ନାହିଁ । ମୋରେଲ୍ ରଖିବା ପାଇଁ ପଡ଼ିବ ।"

ଶ୍ରୀକାନ୍ତ ଧ୍ୟାନମୌନ ନୀରବ ଗାମ୍ଭୀର୍ଯ୍ୟ ଭାଙ୍ଗି କହିଲା---"ସେଥିରେ ଦ୍ୱିମତ ଥାଇ ନ ପାରେ । ଆମକୁ ମୋରେଲ୍ ରଖିବା ପାଇଁ ପଡ଼ିବ ।"

ଶ୍ୟାମଳ ଧୀରୁ, କୁଣ୍ଠିତ କଣ୍ଠରେ ପଚାରିଲା---"କିନ୍ତୁ କିପରି ? ମୋ ପକ୍ଷରେ ସେଇ ଉପାୟଟା ହିଁ ମୁଖ୍ୟ ।"

ବିନୋଦ ଚଉକୀ ଉପରେ ପୁଣି ବସି ପଡ଼ି କହିଲା—"କାଲି ଆମକୁ ଫାଦ୍ଧାରଂ କରାଇବାକୁ ପଡ଼ିବ । ତା'ଛଡ଼ା ଅନ୍ୟ ଉପାୟ ନାହିଁ ।"

ନରବଳି ମନୁଷ୍ୟର ସମାଜ, ଚଳଣି ଓ ଧର୍ମଗ୍ରନ୍ଥରେ ଏକ ବହୁ ପ୍ରାଚୀନ ଧାରଣା । ଶସ୍ୟକ୍ଷେତ୍ରକୁ ମନୁଷ୍ୟର ଅନନ୍ତ ଓ ଅଫୁରନ୍ତ ପ୍ରାଣଶକ୍ତି ଦ୍ୱାରା ପ୍ରାଣବନ୍ତ କରି ଶସ୍ୟବୃଦ୍ଧି ଉଦ୍ଦେଶ୍ୟରେ ନରବଳି ପ୍ରାଚୀନ ମନୁଷ୍ୟସମାଜର ଚଳଣିରେ ଥିଲା । ପରବର୍ତ୍ତୀ ସମାଜରେ ଯଜମାନର କଲ୍ୟାଣ ପାଇଁ ଆରବ୍ଧ ଯଜ୍ଞରେ ନରବଳିର ବିଧାନ ଥିଲା । ସେ ପ୍ରାଗୈତିହାସିକ ପରମ୍ପରା କାଳେ କାଳେ, ଯୁଗେ

ଯୁଗେ, ମନୁଷ୍ୟ ସମାଜରେ ଭିନ୍ନ ଭିନ୍ନ ରୂପରେ ପ୍ରକାଶିତ ହୋଇ ଆସିଛି । ଦେଶ ପାଇଁ ଯୁଦ୍ଧକ୍ଷେତ୍ରରେ ପ୍ରାଣଦାନ ମଧ୍ୟ ବୀରତ୍ୱର ଶ୍ରେଷ୍ଠ ଆଦର୍ଶ ଥିଲା । ଆଜି କ୍ଷମତା ରାଜନୀତିରେ ସେ ପ୍ରାଗୈତିହାସିକ ବର୍ବର ଆତ୍ମାର ଶବ୍ଦାଡ଼ମ୍ବର ଆବରଣ ତଳେ ପୁଣି ପ୍ରକାଶିତ ହେଉଛି । ସେଥିପାଇଁ ସଭାମଞ୍ଚ ଉପରୁ "ଆତ୍ମ-ବଳିଦାନ" "ଚରମ ବଳିଦାନ" ପ୍ରଭୃତି ଶବ୍ଦର ଆସ୍ଫାଳନ ଶୁଣିଲେ, ଏକ ନୂତନ ଭାବାବେଶରେ ପ୍ରାଣ ଚଞ୍ଚଳ ହୋଇ ପଡ଼େ ।

ବିନୋଦ କହିଲା—"ଶୋଷକ ଓ ପୀଡ଼କ ବିରୁଦ୍ଧରେ ଆଜିର ସଂଗ୍ରାମରେ ଆମକୁ ଚରମ ବଳିଦାନ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ ।"

ଏକ ନୂତନ ଉତ୍ତେଜନାରେ ଶ୍ୟାମଳର ଦେହ ରୋମାଞ୍ଚିତ ହୋଇଉଠିଲା ।

ମିଲ୍ ଅଞ୍ଚଳ ସୀମାନ୍ତରେ ଗାନ୍ଧୀ-ମଇଦାନରେ ଶ୍ରମିକସଭା ହେବ । ଶ୍ରମିକବସ୍ତିରେ ଘରକୁ ଘର ଏ ସମ୍ବାଦ ବିଜୁଳି ପରି ଖେଳିଗଲା । ଶ୍ରମିକମାନେ ୧୪୪ ଧାରା ଭଙ୍ଗ କରି ବାହାରିବେ ପଟୁଆରରେ । ସଶସ୍ତ୍ର ପୁଲିସ ହୁଏତ ବାୟୋନେଟ ଉଠାଇ ପଥ ଆଗୁଳିବା ପାଇଁ ଆସିବ । ଆସୁ—ଜନ୍ତୁ କ୍ଷୟିଷ୍ଣୁଶୀଳ, ପଙ୍ଗୁ, ଅଥର୍ବ ପୁଞ୍ଜିବାଦର ଘୃଣ୍ୟ ଜାରଜମାନଙ୍କୁ ସଂଗ୍ରାମୀ ଶ୍ରମିକ ରକ୍ତସ୍ନାନ ଭିତରେ ପୁଣି ଥରେ ନିଜର ନୂତନ ପରିଚୟ ଦେବ । ଶ୍ୟାମଳର ଭାଷା ଆନନ୍ଦରେ ଗୀତମୁଖର ହୋଇଉଠିଲା ।

ପଟୁଆର ବାହାରିବାର ଖବର ପ୍ରକାଶ ପାଉ ନ ପାଉଣୁ ରାସ୍ତାର ଦୁଇ ଧାରରେ ଠିଆ ହୋଇଗଲେଣି ସଶସ୍ତ୍ର ପୋଲିସ ପିକେଟ । ମିଲଟାଙ୍କ ଟ୍ରକ୍ ପଛେ ପଛେ, ଚତୁର ବିଭାଗର ଭ୍ୟାନ ପ୍ରଚାର କରି ଯାଉଛି—୧୪୪ ଧାରା ଭଙ୍ଗ କରି କୌଣସି ଶ୍ରମିକକୁ ପଟୁଆର ବାହାର କରିବାକୁ ଦିଆଯିବ ନାହିଁ ।

ଶ୍ରମିକ ୟୁନିଅନ ଅଫିସ ଭିତରକୁ ୟୁନିଅନର ଜଣେ କର୍ମୀ ଅସ୍ତବ୍ୟସ୍ତ ହୋଇ ପଶିଆସିଲା । ସେ ଆସିଥିଲା, ଏ ସଶସ୍ତ୍ର ଶକ୍ତି ବିରୁଦ୍ଧରେ ପଟୁଆର କିପରି ବାହାର କରିବାକୁ ପଡ଼ିବ, ସେ ସମ୍ବନ୍ଧରେ ପରାମର୍ଶ ପାଇଁ । ବିନୋଦ କପେ ଚା'ରେ ଧୀରେ ଧୀରେ ଚୁମୁକ ଦେଇ ସେ ଦିନର ଖବରକାଗଜ ଖଣ୍ଡେ ପଢୁଥିଲା ନିର୍ଲିପ୍ତ ଭାବରେ । ଶ୍ୟାମଳ ପଟୁଆରରେ ଯେଉଁ ଧ୍ୱନିମାନ ଦିଆଯିବ, ତାହାର ଗୋଟାଏ ଚିଠା ତିଆରି କରୁଥିଲା ।

ଅଉକୃତ ଶ୍ରମିକ କର୍ମୀ ଅନଓ୍ୱାର, ବଙ୍ଗାଳୀ ମୁସଲମାନ ଯୁବକ । ବୃତ୍ତି ଶ୍ରମିକ । ଶିଠିରେ, ବାହୁରେ ଲୁଗମାଡର ଅନେକ ଦାଗ ମିଳବ । ଶ୍ରମିକମାନଙ୍କ ଠାରୁ ଲୁଚି ଲୁଚି ସାମ୍ବାଦିକ ଚାନ୍ଦା ଆଦାୟ କରିବା, ବିପକ୍ଷ ୟୁନିଅନର ଶ୍ରମିକ-ମାନଙ୍କୁ ଅନ୍ଧାର ରାସ୍ତାରେ ପିଟିବା, ଆଉ ୟୁନିଅନ କର୍ମକର୍ତ୍ତାମାନଙ୍କ ଶରୀର-ରକ୍ଷୀ ରୂପେ କାର୍ଯ୍ୟ କରିବା ଅନଓ୍ୱାରର ଦାୟିତ୍ୱ । ଅନଓ୍ୱାର ପିନ୍ଧିଥିଲା କଳା ପାଇଜାମା ଉପରେ ଖଣ୍ଡେ ଧଳା ସ୍ୱାଟସାର୍ଟ । ଛାତିର ଦୁଇ ସୁଗଠିତ ମାଂସପେଶୀ ଓ ତା' ମଝିରେ ବେକରେ ଖଣ୍ଡେ କଳା ସୂତାରେ ଝୁଲୁଥିବା ଗୋଟାଏ ତ୍ରିକୋଣିଆ ମାଦୁଲି, ଫୁଲପକା ପାତଳା କନାର କାମିଜ ଭେଦ ବାହାରକୁ ଦିଶୁଥିଲା ।

ବିନୋଦ ପଚାରିଲା—"ଆଜି କି ଖବର ଅନଓ୍ୱାର ?"

ଅନଓ୍ୱାର କହିଲା—"ମିଲଗେଟ୍ ଆଉ ପୁଲିସ ଗାଡ଼ି ଦୁଇକଡ଼େ ଛିଡ଼ା ରହିଲେଣି । ଗେଟ୍ ଆଗରେ କେହି ବାହାରିବା ପାଇଁ ସାହସ କରୁନାହାନ୍ତି ।"

ବିନୋଦ ସିଗାରେଟ୍‌ରେ ଗୋଟାଏ ଜୋର ଟାଣଦେଇ କହିଲା—"ସେଥିପାଇଁ ସାହସ ଦେବା ତ ଆମର କର୍ତ୍ତବ୍ୟ । ମୁଣ୍ଡ ମୁଣ୍ଡର ନିର୍ଦ୍ଦେଶିତ, ମୃତ ଶ୍ରମିକଙ୍କର ଛାତିକୁ ପୁଲିସର ବାୟୋନେଟ୍ ଦେହରେ ପକାଇ ଆମକୁ ଇଙ୍ଗିତ କରିବାକୁ ପଡ଼ିବ ।"

ଅନଓ୍ୱାର ନବୋଧ ପରି ବିନୋଦ ଆଡ଼େ କେବଳ ଚାହିଁ ରହିଲା । ଯଦି ଗେଟ୍ ଆଗରେ ତାକୁ ସ୍ଲୋଗାନ ଦେଇ ଯିବାପାଇଁ ବିନୋଦ କହେ, ତା'ହେଲେ ସେ କ'ଣ ଉତ୍ତର ଦେବ, ତାହା ହିଁ ହୁଏତ କିଂକର୍ତ୍ତବ୍ୟବିମୂଢ଼ ପରି ସେ ଭାବୁଥିଲା ।

ବିନୋଦ କହିଲା— 'ଗେଟ୍ ଆଗରେ ରହିବେ ସ୍ତ୍ରୀମାନେ, ସେମାନଙ୍କ ପଛରେ ପୁରୁଷମାନେ ରହିବେ ଧାଡ଼ିବାନ୍ଧି । ସମସ୍ତଙ୍କ ପଛରେ ଜଗି ରହିବୁ ଆମେ ନିର୍ଦ୍ଦେଶ ଦେବା ପାଇଁ ।"

ଶ୍ୟାମଳର ସ୍ଲୋଗାନ ଲେଖା ବନ୍ଦ ହୋଇଗଲା । ସେ ପଚାରିଲା, "ନିଶ୍ଚିତ ମୃତ୍ୟୁ ଆଗକୁ ସ୍ତ୍ରୀମାନଙ୍କୁ ଠେଲି ଦେଇ ପୁରୁଷମାନେ ପଛରେ ରହିବା ଅତି ଅସୁନ୍ଦର ଦିଶିବ ।"

ବିନୋଦ କୌଣସି ପ୍ରତିବାଦ କେବେ ସହ୍ୟ କରିପାରେ ନାହିଁ । ବିନୋଦର ନିର୍ଦ୍ଦେଶ ଚରମ ଓ ପରମ । ସେଥିରେ କୌଣସି ମତାନ୍ତର ବା ମନ୍ତ୍ର ପ୍ରକାଶ ପାଇଲେ ସେ କ୍ଷିପ୍ତ ହୋଇଉଠେ । ବିନୋଦ ଉକ୍ତିଟି ପରି କହିଲା— "ଏସବୁ 'ଶିଭାଲ୍ରି' *ମଧ୍ୟଯୁଗୀୟ ବୁର୍ଜୋୟାର ପ୍ରାଗୈତିହାସିକ ଆଚାର । ଆଜି ସେ ସବୁ ବନ୍ଧନରେ ପ୍ରଗତି ଓ ବିପ୍ଳବର ପଥ ଅବରୁଦ୍ଧ ନ ହେଉ ।"

ଶ୍ୟାମଳ ପୁଣି ସ୍ଲୋଗାନ ଲେଖାରେ ମନ ଦେଲା ।

ପ୍ରାୟ ତିନିଶହ ଶ୍ରମିକଙ୍କ ପଟୁଆର ବାହାରିଛି । ପଟୁଆର ସାମନାରେ ପନ୍ଦର କୋଡ଼ିଏ ଜଣ ସ୍ତ୍ରୀ ଶ୍ରମିକ; ସେମାନଙ୍କ ପଛରେ ଧାଡ଼ି ବାନ୍ଧି ଚାଲିଛନ୍ତି ପୁରୁଷ ଶ୍ରମିକ । ସମସ୍ତଙ୍କ ପଛରେ ବିନୋଦ, ଶ୍ୟାମଳ ଓ ଶ୍ରୀକାନ୍ତ । ଅନନ୍ତ୍ୱାର ଓ ତା'ର ପରି ଆଉ ତିନି ଜଣ ସେମାନଙ୍କ ପାଖେ ପାଖେ ଚାଲିଛନ୍ତି ଶରୀରରକ୍ଷୀ ପରି । ପଟୁଆର ଓ ପୁଲିସବାହିନୀର ଦୃଶ୍ୟ ଦେଖିବା ଲାଗି, ରାସ୍ତା କଡ଼େ କଡ଼େ କେତେ ଦର୍ଶକ ମଧ୍ୟ ବେଳେ ବେଳେ ଜମି ଯାଉଛନ୍ତି । କିନ୍ତୁ ମିଲିଟାରି ଟ୍ରକ ବା ପୁଲିସ ସର୍କେଲର ମୋଟର ଯାଉଥିବା ଦେଖିଲେ ମୁହୂର୍ତ୍ତକ ଭିତରେ ସେମାନେ ଛତ୍ରଭଙ୍ଗ ହୋଇ ପଳାଇ ଯାଉଛନ୍ତି, ଯେପରି ଆସନ୍ନ ମୃତ୍ୟୁମୁଖରୁ ଆତ୍ମରକ୍ଷା ପାଇଁ ।

ରାଜୀ ମଇଦାନ ଆଉ ଅଳ୍ପ ବାଟ । ପଟୁଆର ଆଉ ଆଗେଇ ଯିବାକୁ ଦିଆଯିବ ନାହିଁ ।

ସ୍ଲୋଗାନ ଦେଇ ଦେଇ ଶ୍ରମିକମାନଙ୍କର କଣ୍ଠ ବସିଗଲାଣି । ଏଠି ସ୍ଲୋଗାନ ଦେବାର ମଧ୍ୟ କୌଣସି ଅର୍ଥ ନାହିଁ । ରାସ୍ତା ଦୁଇପାଖରେ ମିଲ୍ ମାନଙ୍କର ଉଞ୍ଚା ଉଞ୍ଚା ପାଚେରି । ପଟୁଆର ସହରର ଜନାକୀର୍ଣ୍ଣ ଅଞ୍ଚଳ ପାରହୋଇ ଆସିଲାଣି ।

ପ୍ରାୟ ତିନିଶହ ଅଶସ୍ତ୍ର ଶ୍ରମିକଙ୍କ ପଟୁଆର—ମାତ୍ର ସେମାନଙ୍କ ସମ୍ମୁଖରେ ଦୁଇଶହ ସଶସ୍ତ୍ର ପୁଲିସ । ପୁଲିସବାହିନୀ ପଛରେ ମିଲିଟାରି ଟ୍ରକ୍ ଉପରେ ବ୍ରେନ୍‌ଗନ ଓ ଷ୍ଟେନ୍‌ଗନ ସଜା ହୋଇ ରହିଛି । ଅପରାହ୍ଣର ସୂର୍ଯ୍ୟାଲୋକରେ ବାୟୋନେଟ୍ ସବୁ ଚକ୍‌ଚକ କରୁଛି । ଗୁଳି ଚଳାଇବା ଆଦେଶ ପାଇଁ କେବଳ

* ନାରୀ ପ୍ରତି ସମ୍ମାନବୋଧ (chivalry)

ଅପେକ୍ଷା । ଆଦେଶ ମିଳିଗଲେ କଲର ମଣିଷ ପରି ସଶସ୍ତ୍ର ସିପାହୀମାନେ ଗ୍ରାଉଣ୍ଡ ପରେ ଗ୍ରାଉଣ୍ଡ ଗୁଳି ଚଳାଇଯିବେ । ସେମାନେ ମୁକ୍ତ୍ରିକ ପାଇଁ ଭାବିବେ ନାହିଁ । ସେମାନେ ସଶସ୍ତ୍ର, କିନ୍ତୁ ସେମାନଙ୍କ ସମ୍ମୁଖରେ ଯେଉଁମାନେ ସେମାନେ ସମସ୍ତେ ଅଶସ୍ତ୍ର ।

ଏହିପରି ପରିସ୍ଥିତିମାନଙ୍କରେ ମନେ ହୁଏ ରାଷ୍ଟ୍ର ଗଠନହିଁ ମନୁଷ୍ୟର ପ୍ରଥମ ଓ ପ୍ରଧାନ "ଅକ୍ଷମଣୀୟ ଅପରାଧ । ଏହାର ଶାସ୍ତି ଏହିପରି କାଳେ କାଳେ ବ୍ୟକ୍ତିକୁ ଭୋଗକରିବା ପାଇଁ ପଡ଼ିବ ।

ଝଡ଼ ପୂର୍ବର ନୀରବତା ପରି ସବୁ ଶାନ୍ତ ଓ ନିଶ୍ଚଳ ଥିଲା । ପଟୁଆରରେ ଥିବା ଶ୍ରମିକମାନେ ନିର୍ବୋଧ ଆଖିରେ ଚାହିଁ ରହିଥିଲେ ସୂର୍ଯ୍ୟାଲୋକରେ ଚକ ଚକ କରୁଥିବା ବାୟୋନେଟ ଆଡ଼େ ।

ମାଜିଷ୍ଟ୍ରେଟ ହାକିମୀ କଣ୍ଠରେ କହିଲେ—"ମୁଁ ଏ ପଟୁଆରକୁ ବେଆଇନ ଘୋଷଣା କରୁଅଛି । ପାଞ୍ଚ ମିନିଟ ମଧ୍ୟରେ ଏ ପଟୁଆର ଭାଙ୍ଗି ଚାଲି ନ ଗଲେ । ଗୁଳି ଚାଲିବ ।"

ଗୁଳି ଚାଲିବ ଶୁଣି ପଟୁଆର ସାମନାରେ ଥିବା ସ୍ତ୍ରୀଲୋକମାନେ ଭୀତତ୍ରସ୍ତ ଭାବରେ ପଛକୁ ଚାହିଁଲେ ।

ମାଜିଷ୍ଟ୍ରେଟ ପୁଣି କହିଲେ—"ତୁମମାନଙ୍କର ଅଧିକାଂଶ ଦାବୀ ମାନେଜମେଣ୍ଟ ମାନି ନେଇଛନ୍ତି । ଅବଶିଷ୍ଟ କେତେକ ଦାବୀର ବିଚାର ଯଥା ସମୟରେ ହେବ । କିନ୍ତୁ ପାଞ୍ଚମିନିଟ ମଧ୍ୟରେ ଏ ପଟୁଆର ନ ଭାଙ୍ଗିଲେ ମୋତେ ଫାୟରିଂ ଅର୍ଡର ଦେବା ପାଇଁ ପଡ଼ିବ ।"

ଫାୟାରିଂ ଶବ୍ଦଟା ମାଜିଷ୍ଟ୍ରେଟଙ୍କ ମୁହଁରୁ ବାହାରୁ ନ ବାହାରୁଣୁ ସଶସ୍ତ୍ର ପୁଲିସ ବାହିନୀ ପଟୁଆର ଆଡକୁ ବନ୍ଧୁକ ଲକ୍ଷ୍ୟ କଲେ । ପଟୁଆର ସାମନାରେ ଯେଉଁମାନେ ଥିଲେ, ସେମାନେ କିଂକର୍ତ୍ତବ୍ୟବିମୂଢ଼ ପରି ପଛଘୁଞ୍ଚା ଦେବାପାଇଁ ଆରମ୍ଭ କଲେ । ମାଜିଷ୍ଟ୍ରେଟ ହାତଘଣ୍ଟା ଆଡ଼େ ଅନାଇଥାନ୍ତି ।

ପଟୁଆର ପଛରେ ଥାଇ ଶ୍ୟାମଳ କହିଲା—"ଏ ବର୍ବର ପଶୁଶକ୍ତିକୁ ପଶୁ ଶକ୍ତିଦ୍ୱାରା ସମ୍ମୁଖୀନ ହେବା ଅସମ୍ଭବ । ପଟୁଆର ଭାଙ୍ଗିଦେବା ଉଚିତ । ଏ ବର୍ବର

ଘଟଣସ୍ଥ ଶତ୍ରୁର ସମ୍ମୁଖୀନ ହେବାପାଇଁ ନୂତନ କୌଶଳର ପରିକଳ୍ପନା ହେବା ଉଚିତ । ଆଜି ତ ଅଷ୍ଟାଦଶ ଶତାବ୍ଦୀର ଦିନ ନାହିଁ ଯେ, ବାରୁଦଠେଣା ବନ୍ଧୁକରେ ଶକ୍ତି ସୈନ୍ୟବାହିନୀକୁ ବାହୁବଳରେ ମୁକାବିଲା କରିହେବ ! ଆଜି ଷ୍ଟେନ୍‌ଗନ୍‌ର ଗୋଟିଏ ଗର୍ଜନରେ ଅର୍ଦ୍ଧକ୍ଷଣରେ ପାଞ୍ଚଶହ ମଣିଷଙ୍କୁ ଶିକାର କରିହେବ ।”

ବିନୋଦ ଶ୍ୟାମଳ କଥାରେ ପାଗଳ ପରି ଉତ୍ତେଜିତ ହୋଇ କହିଲା—“ମୁଁ ଲଜ୍ଜିତ ଓ ଅନୁତପ୍ତ ଯେ, ପୁଞ୍ଜିବାଦର ପଞ୍ଚମ ବାହିନୀକୁ ମୁଁ କମ୍ରେଡ୍ ବୋଲି ବିଶ୍ୱାସ କରିଥିଲି ।”

ବିନୋଦ ତା’ପରେ ଅନ୍ଧାରକୁ ଆଖି ଠାରିଦେଲା । ମୁହୂର୍ତ୍ତକ ଭିତରେ ଦୁଇ ତିନିଟା ଟେକା ପଡ଼ିଲା ମାଜିଷ୍ଟ୍ରେଟଙ୍କ ମୁଣ୍ଡ ଉପରକୁ । ଗୋଟାଏ ଟେକା ବାଜି ମାଜିଷ୍ଟ୍ରେଟଙ୍କ ମୁଣ୍ଡରୁ ରକ୍ତ ଝରିଲା ।

ମାଜିଷ୍ଟ୍ରେଟ୍ ଗୋଟାଏ ହାତରେ ମୁଣ୍ଡରୁ ରକ୍ତ ପୋଛି ଚିତ୍କାର କରି ଉଠିଲେ ..“ଫାୟାର୍ !”

ସାତ ମିନିଟ୍ ଗୁଳି ଫାୟାର ପରେ, ପଟୁଆରର କୌଣସି ପତ୍ତା ରହିଲା ନାହିଁ । ଫାୟାରିଂ ବେଳେ ଯେଉଁମାନେ ତଳେ ମୁହଁମାଡ଼ି ପଡ଼ି ରହିଥିଲେ, ସେମାନେ ଫାୟାରିଂ ବନ୍ଦ ହେବା ସଙ୍ଗେ ସଙ୍ଗେ ଜୀବ କୁଆଡ଼େ ଛତ୍ରଭଙ୍ଗ ଦେଇ ପଳାଇଗଲେ । ଫାୟାରିଂ ଶେଷରେ ପାଞ୍ଚଜଣ ଆହତ ଶ୍ରମିକଙ୍କୁ ଗୋଟାଏ ଆମ୍ବୁଲାନସରେ ଭର୍ତ୍ତି କରାଗଲା । ସେମାନଙ୍କ ମଧ୍ୟରୁ ତିନିଜଣ ସ୍ତ୍ରୀ, ଜଣେ ବୁଢ଼ା ଓ ଆଉ ଜଣେ ଯୁବକ । ବୁଢ଼ାର ଅବସ୍ଥା କିନ୍ତୁ ଅତି ସାଂଘାତିକ । ତା’ ପେଟରୁ ରକ୍ତଧାର ସୁଅ ପରି ବହୁଥିଲା ।

ହସ୍‌ପିଟାଲରେ ପହଞ୍ଚିବାର ଦୁଇଘଣ୍ଟା ପରେ ବୁଢ଼ାର ମୃତ୍ୟୁ ହୋଇଗଲା । ବୁଢ଼ା କାରଖାନାର ଶ୍ରମିକ ନୁହେଁ ବା ଧର୍ମଘଟ ସହିତ ତାର ସମ୍ପର୍କ ନ ଥିଲା କିମ୍ବା ଶ୍ରମିକ ୟୁନିଅନରେ କେହି ତାକୁ ଜାଣି ନ ଥିଲେ । ପୁଲିସ ମଧ୍ୟ ତାର କୌଣସି ଚିହ୍ନଟ କରିପାରିଲା ନାହିଁ । କେହି କେହି କହିଲେ, ସେ ଗୋଟିଏ ଭିକାରି । ପଟୁଆରରେ ସେ କିପରି ଯେ ପୁଲିସ ଗୁଳି ପାଖକୁ ଆସିଲା, କେଜାଣେ ?

କିନ୍ତୁ ଶ୍ରମିକ ୟୁନିଅନର ଅଣ୍ଡରଗ୍ରାଉଣ୍ଡ ଛାପାଖାନାରୁ ଯେଉଁ ବୁଲେଟିନ୍ ପ୍ରକାଶ ପାଇଲା, ସେଥିରେ ଏହି ‘ଶହୀଦ’ଙ୍କ ଆତ୍ମବଳିଦାନର ବିବରଣୀ ଅତି ମର୍ମସ୍ପର୍ଶୀ ଭାବରେ ପ୍ରକାଶ ପାଇଥିଲା ।

ଏହି ବରେଣ୍ୟ ଶହୀଦଙ୍କ ନାମ କୁଆଡ଼େ ଅରୁଣ ବଣ୍ଡାଲ । ପଞ୍ଚାଶ ବର୍ଷର ବୁଢ଼ା—କିନ୍ତୁ ଦେହରେ ଆଉ ମନରେ ତାଙ୍କର ଶତସିଂହର ତେଜ । ଶ୍ରମିକ ୟୁନିଅନର ଜଣେ ପୁରୁଖା କର୍ମୀ । ସଶସ୍ତ୍ର ପୁଲିସ ପିକେଟ ଯୋଗୁଁ କେହି ସାହସ ନାହିଁ ପଟୁଆରରେ ବାହାରୁ ନାହାନ୍ତି ବୋଲି ଯେତେବେଳେ ଆରୁଣ ବଣ୍ଡାଲ ଶୁଣିଲେ, ସେତେବେଳେ ସେ ଏକା ସ୍ଲୋଗାନ୍ ଦେଇ ରାସ୍ତାରେ ବାହାରି ପଡ଼ିଲେ । ମାଜିଷ୍ଟ୍ରେଟ୍ ଫାୟାରିଂ ଆଦେଶ ଦେଲାବେଳେ ସେ ନିଜ ଛାତି ବନ୍ଧୁକ ଆଡ଼କୁ ଦେଖାଇ ଦେଇ କୁଆଡ଼େ କହିଥିଲେ—'ମନେରଖ, ବନ୍ଧୁକ ଗୁଳିରେ ତୁମେ ଶ୍ରମିକର ଦାବିକୁ ମାରି ପାରିବ ନାହିଁ । ଆମର ବିନ୍ଦୁ ବିନ୍ଦୁ ରକ୍ତରୁ ଶତ ଶତ ରକ୍ତବୀଜ ବାହାରି ତୁମକୁ ଧ୍ୱଂସ କରିଦେବେ ।'' ଅରୁଣ ବଣ୍ଡାଲଙ୍କ କଥା ଶେଷ ହୋଇଛି କି ନାହିଁ, ଗୋଟାଏ ଗୁଳି ତାଙ୍କ ଛାତି ଭେଦ ବାହାରିଗଲା । ଦେହରେ ଶେଷନିଶ୍ୱାସ ଥିବା ପର୍ଯ୍ୟନ୍ତ ଅରୁଣ ବଣ୍ଡାଲ ନିଜ ହାତରୁ ୟୁନିଅନ ପତାକା ଛାଡ଼ି ନ ଥିଲେ ଇତ୍ୟାଦି ।

କିନ୍ତୁ ପରେ ଯେଉଁ ପୋଷ୍ଟମର୍ଟେମ୍ ରିପୋର୍ଟ ବାହାରିଲା, ସେଥିରେ ବନ୍ଧୁକ ଗୁଳିଟା ଶହୀଦଙ୍କ ଉପର ପିଠିରେ ବାଜିଥିଲା ବୋଲି ଉଲ୍ଲେଖ ଥିଲା । ଶହୀଦଙ୍କ ପରିଚୟ ସମ୍ବନ୍ଧରେ କୌଣସି ନିର୍ଦ୍ଦିଷ୍ଟ ବିବରଣୀ ନ ମିଳିଲେ ସୁଦ୍ଧା ପୁଲିସ ମୃତବ୍ୟକ୍ତିକୁ ଗୋଟିଏ ବୁଲା ଭିକାରି ବୋଲି ଚିହ୍ନଟ କଲା ।

ଯାହାହେଉ ଶହୀଦ ଅରୁଣ ବଣ୍ଡାଲଙ୍କ ଆତ୍ମ-ବଳିଦାନ, କେତେଦିନ ପର୍ଯ୍ୟନ୍ତ ଆଧୁନିକ କବିମାନଙ୍କୁ, ବହୁ ନୂତନ 'ପ୍ରଗତିଶୀଳ' କବିତାର ଉପଜୀବ୍ୟ ଯୋଗାଇଥିଲା—ଅଫିମ ପରି କଳା କିଟ୍‌କିଟ୍ ଅନ୍ଧାର ରାତି, ଧ୍ୱଂସ ଅଜଗରର ଫୁତ୍କାର ଝଡ଼ ପରି ବହୁଛି । ରକ୍ତର ଯମୁନା ପାର ହୋଇ, ସପ୍ତଫେଣୀ ନାଗର ଫଣା ତଳେ ଶହୀଦ୍ ଅରୁଣ ଗ୍ରାଲିଛନ୍ତି ବିପ୍ଳବର ଶିଶୁକୁ କୋଳରେ ଜାକି । କଂସାସୁରର ଦିନ ଶେଷ ହୋଇ ଆସିଲା ଇତ୍ୟାଦି ।

ଫାୟାରିଂ ପରେ ପୁଣି ନିତିଦିନିଆ ଅବସ୍ଥା ଅବଶ୍ୟ ଧୀରେ ଧୀରେ ଫେରିଆସିଲା । କାରଖାନାର ଚିମନିମାନଙ୍କରୁ ପୁଣି ଧୂଆଁ ବାହାରିଲା, ମେସିନ୍‌ର ଶବ୍ଦରେ ପୁଣି ମିଲ୍ ଅଞ୍ଚଳ ଜୀବନ୍ତ ହୋଇଉଠିଲା । ଶ୍ରମିକ ୟୁନିଅନର କର୍ତ୍ତାମାନେ ଶ୍ରମିକ ଆନ୍ଦୋଳନ ଜୟଯୁକ୍ତ ହୋଇଅଛି ବୋଲି ବିବୃତି ଲେଖିବା ଆରମ୍ଭ କରିଦେଲେ । ଶାସନର କର୍ତ୍ତୃପକ୍ଷ, ପୁଣି ସାଧାରଣ ଅବସ୍ଥା ଫେରି ଆସିଲା ବୋଲି ତୃପ୍ତିର ଦୀର୍ଘଶ୍ୱାସ ଛାଡ଼ିଲେ ।

କିନ୍ତୁ ପୁଣି ଗଣ୍ଡଗୋଳ ଲାଗିଲା ଶହୀଦ୍ ଅରୁଣ ବିଶ୍ୱାଳଙ୍କ ଶବସତ୍କାର ଉପଲକ୍ଷରେ । ଶହୀଦ୍‌ଙ୍କ ନାମ ଅରୁଣ ବିଶ୍ୱାଳ ହେଉ ବା ଆକବର ଖାଁ ହେଉ, କବନ୍ଧ-ଜନତା ପକ୍ଷରେ ତାର କୌଣସି ବିଶେଷତ୍ୱ ନାହିଁ । ସେ ଶ୍ରମିକ ନେତା ହୁଅନ୍ତୁ ବା ରାସ୍ତାରେ ଭିକାରୀ ହୁଅନ୍ତୁ, ସେ ବିଚାରର ମଧ୍ୟ ନିରର୍ଥକ । ଏକମାତ୍ର ସତ୍ୟ ସେ ଶହୀଦ—ପୁଲିସ ବନ୍ଧୁକ ଟିପିଲାବେଳେ ସେ ବନ୍ଧୁକ ଆଗରେ, "ଶ୍ରମିକ ୟୁନିଅନ ଜିନ୍ଦାବାଦ୍" କହି ଛାତି ପତାଇ ଦେଇଥିଲେ । ତେଣୁ ଶହୀଦଙ୍କ ଶବ ସତ୍କାର ପାଇଁ, ହସପିଟାଲ ସମାନାରେ ହଜାର ହଜାର ଲୋକ ଜମିଗଲେ । ଅରୁଣ ବିଶ୍ୱାଳ ନାମଟା ଆଉ ଦୁଇ ତିନିଦିନ ପରେ ସମସ୍ତେ ଭୁଲିଯିବେ—ଆଜି କିନ୍ତୁ ତାଙ୍କ ନାମ ଇତିହାସର ସବୁ ସ୍ମରଣୀୟ ନାମର ଊର୍ଦ୍ଧ୍ୱରେ ।

ହସପିଟାଲ ନିକଟରୁ ଦୁଇଟି ରାସ୍ତା ଯାଇଛି ଶ୍ମଶାନ ଆଡ଼େ । ବାଁ ହାତ ରାସ୍ତା ସିଧା ଚାଲିଯାଇଛି ଶ୍ମଶାନକୁ । ଡାହାଣହାତ ରାସ୍ତା ସହରର କେତେକ ଅଞ୍ଚଳ ଭିତରେ ଦେଇ ଯାଇଛି ଶ୍ମଶାନ ଆଡ଼େ ।

ପୁଲିସର ନିର୍ଦ୍ଦିଷ୍ଟ ପଥ ବାଁ ହାତ ରାସ୍ତା ।

ଫୁଲମାଳ ଓ ଶ୍ରମିକ ୟୁନିଅନର ପତାକାରେ ସଜ୍ଜିତ ଅରୁଣ ବିଶ୍ୱାଳଙ୍କ ଶବାଧାର—ବାଁ ହାତ ରାସ୍ତାରେ ଯିବ ନା ଡାହାଣ ହାତ ରାସ୍ତାରେ ଯିବ, ସେଥିପାଇଁ କର୍ତ୍ତୃପକ୍ଷଙ୍କ ସହିତ ସକାଳୁ ଲାଗିଛି ଯୁକ୍ତିତର୍କ । ଶବାଧାରକୁ ଘେରି ବସିଥିଲେ ବିନୋଦ, ଶ୍ରୀକାନ୍ତ, ଶ୍ୟାମଳ ଓ ସେମାନଙ୍କର ଅନ୍ୟ କେତେଜଣ ସହକର୍ମୀ । ଦିନ ବଢ଼ିବା ସଙ୍ଗେ ସଙ୍ଗେ ଜନଗହଳି ମଧ୍ୟ ବଢ଼ୁଛି । ହସପିଟାଲ ଠାରୁ ଛକ ପର୍ଯ୍ୟନ୍ତ ରାସ୍ତା ପ୍ରାୟ ପନ୍ଦରହଜାର ଦର୍ଶକ ଓ ଶବଯାତ୍ରୀଙ୍କ ସମାଗମରେ ଏକ ଜନସମୁଦ୍ରରେ ପରିଣତ ହୋଇଗଲାଣି । ଶାନ୍ତିରକ୍ଷା ନାମରେ ସଶସ୍ତ୍ର ପୁଲିସ ବାହିନୀ ବାୟୋନେଟ୍ ଉଠାଇ ନିଷିଦ୍ଧ ରାସ୍ତା ମୁହଁରେ ଠିଆ ହୋଇଗଲେଣି ।

ଅନ୍ୟ ଏକ ଶ୍ରମିକ ୟୁନିଅନର କର୍ମକର୍ତ୍ତାମାନେ ଏହି ଅବକାଶରେ ନିଜ ନେତୃତ୍ୱ ଓ କର୍ତ୍ତୃତ୍ୱ ଜାହିର କରିବା ପାଇଁ ସକାଳୁ ମଧ୍ୟ ଜୁଟି ଯାଇଛନ୍ତି । ସେମାନଙ୍କ ମତରେ ଶହୀଦ ଅରୁଣ ବିଶ୍ୱାଳ ଆଜି କୌଣସି କ୍ଷୁଦ୍ର ଦଳର ବା ସଂକୀର୍ଣ୍ଣ ଗୋଷ୍ଠୀର ନୁହନ୍ତି—ସମଗ୍ର ଶୋଷିତ, ନିଷ୍ପେଷିତ ସଂଗ୍ରାମୀ ଶ୍ରମିକ ଜନତାର ସେ ଆରାଧ୍ୟ ଇଷ୍ଟଦେବ ! ତେଣୁ ବିନୋଦ ବା ଶ୍ୟାମଳ ଅପେକ୍ଷା ସେମାନେ ଅଧିକ ବେଶି ଉତ୍ସାହର ସହିତ "ଶହୀଦ ଅରୁଣ ବିଶ୍ୱାଳ ଜିନ୍ଦାବାଦ୍" ସ୍ଲୋଗାନରେ ମାତି ଉଠିଛନ୍ତି ।

ସନ୍ଧ୍ୟା ହେବାକୁ ଅଳ୍ପ ମୋଟେ ଦୁଇଘଣ୍ଟା ବାକି । ପୁଲିସ କର୍ତ୍ତୃପକ୍ଷ ମାଇକ୍ରୋଫୋନ୍ ଯୋଗେ ଘୋଷଣା କରିଦେଲେ, ଅଧଘଣ୍ଟା ଭିତରେ ଶବଯାତ୍ରା ପୂର୍ବ ନିର୍ଦ୍ଦିଷ୍ଟ ରାସ୍ତାରେ ବାହାରି ନ ଗଲେ, ପୁଲିସ ପୁଣି ଗୁଳି ଚଳାଇବାକୁ ବାଧ୍ୟ ହେବ ।

ଗଦାଧର ପାଖରେ ବସି ବିନୋଦ ଶ୍ରୀକାନ୍ତକୁ କହିଲା – "ଏ ସୁଯୋଗ ଆଉ ଆସିବ ନାହିଁ ଶ୍ରୀକାନ୍ତ । ବୁର୍ଜୋୟାର ଦଲାଲମାନଙ୍କ ମୁଖା ଏହି ହଜାର ହଜାର ଶ୍ରମିକଙ୍କ ସମ୍ମୁଖରେ ଆମକୁ ଖୋଲିଦେବା ପାଇଁ ପଡ଼ିବ ।

ଶ୍ରୀକାନ୍ତ ପାଖରେ ଥିବା ଜଣେ ଶ୍ରମିକର କାନ୍ଧ ଉପରେ ଠିଆ ହୋଇ ଚିତ୍କାର କରି ସ୍ଲୋଗାନ ଦେଲା—"ପୁଞ୍ଜିବାଦ ଧଂସ ହେଉ ।" "ଶହୀଦ ଅରୁଣ କରେ ପୁକାର ।" ସମୁଦ୍ର ଗର୍ଜନ ପରି ଜନତା ଉଦ୍‌ବେଳିତ ପ୍ରତିଧ୍ୱନି ଦେଲା— "ପୁଞ୍ଜିବାଦୀ ସରକାର ହୁସିଆର ।" ପ୍ରାୟ ପାଞ୍ଚମିନଟ୍ ସ୍ଲୋଗାନ ପରେ ଶ୍ରୀକାନ୍ତ ପୂର୍ବପରି ଜଣେ ଶ୍ରମିକର କାନ୍ଧ ଉପରେ ଠିଆ ହୋଇ କହିଲା—ଭାଇମାନେ, ବାଁ ହାତ ରାସ୍ତା ପ୍ରତିକ୍ରିୟାର କାଉଣ୍ଟର ରିଭଲ୍ୟୁସନର ରାସ୍ତା, ବୁର୍ଜୋୟାର ଦଲାଲମାନଙ୍କର ରାସ୍ତା, କିନ୍ତୁ ଦକ୍ଷିଣର ରାସ୍ତା ପ୍ରଗତିର ରାସ୍ତା, ବିପ୍ଳବର ରାସ୍ତା, ଶହୀଦ ଅରୁଣ ବଣ୍ଡାଲଙ୍କ ରାସ୍ତା । ଆପଣମାନେ କେଉଁ ରାସ୍ତାରେ ଯିବେ ?"

ଜନତା ଉତ୍ତର ଦେଇ—"ଆମେ ଯିବୁ ଡାହାଣ ରାସ୍ତାରେ ।"

ଶ୍ରୀକାନ୍ତ ସ୍ଲୋଗାନ ଦେଲା—"ଡ଼ାହାଣ ରାସ୍ତା ଜିନ୍ଦାବାଦ । ବାଁ ପାଖ ରାସ୍ତା ମୁର୍ଦ୍ଦାବାଦ ।"

ଜନତା ଚିତ୍କାର କଲା —"ଡ଼ାହାଣ ରାସ୍ତା ଜିନ୍ଦାବାଦ ।"

ଅନ୍ୟ ଶ୍ରମିକ ୟୁନିଅନର କର୍ତ୍ତା ନିଜ ହାତମୁଠାରୁ ନେତୃତ୍ୱ ଖସି ଯାଉଥିବା ଦେଖି ଶ୍ରୀକାନ୍ତ ପରି ଅନ୍ୟ ଜଣେ ଶ୍ରମିକର କାନ୍ଧ ଉପରେ ଠିଆ ହୋଇ ଭାଷଣ ଦେଲେ ।

"ଭାଇମାନେ, ସବୁ ରାସ୍ତା ଏକ । ଆମ୍ଭେମାନେ ଶହୀଦଙ୍କ ଶବ ପ୍ରତି କୌଣସି ଅସମ୍ମାନ ନ ଦେଖାଇ ପୂର୍ବ ନିର୍ଦ୍ଦିଷ୍ଟ ବାଁ ହାତ ରାସ୍ତାରେ ଯିବା । ଆପଣମାନେ ଉତ୍ତେଜନାକାଙ୍କ୍ଷୀମାନଙ୍କ କଥାରେ ଭୁଲନ୍ତୁ ନାହିଁ ।"

ତାଙ୍କ କଥା ଶେଷ ହୋଇଛୁନି ନାହିଁ—"ବୁର୍ଜୋୟା ଦଲାଲ ଫେରଯାଅ," "ବୁର୍ଜୋୟା ଦଲାଲ ଫେରଯାଅ" ଧ୍ୱନି ଯହିତ, ଚଟି ଜୋତା ଓ ଟେକା ବୃଷ୍ଟି ଆରମ୍ଭ ହୋଇଗଲା ।

ସ୍ଲୋଗାନ୍ ଅରମ୍ଭ ହେଲ –

ଦକ୍ଷିଣ ରାସ୍ତା·· ବିପ୍ଳବର ରାସ୍ତା

ବାମର ରାସ୍ତା...ପ୍ରତି-ବିପ୍ଳବର ରାସ୍ତା

ଦକ୍ଷିଣରେ ରାସ୍ତା···ପ୍ରଗତିର ରାସ୍ତା

ବାମର ରାସ୍ତା....ପ୍ରତିକ୍ରିୟାର ରାସ୍ତା

ଦକ୍ଷିଣରେ ରାସ୍ତା ..ଶହୀଦ ଅରୁଣ ବିଶ୍ୱାଳଙ୍କ ରାସ୍ତା

ବାମର ରାସ୍ତା—ବୁର୍ଜୋୟାର ଦଲାଲମାନଙ୍କର ରାସ୍ତା

ସ୍ଲୋଗାନ ଶେଷ ହେବା ପରେ ଜନତାକୁ ଦକ୍ଷିଣ ପଥ ଆଡ଼େ ମୁହାଁଇବା ପାଇଁ ଅନଓ୍ୱାର ଅଉ ତାର ସାଥୀମାନେ ପଛଆଡ଼ୁ କୁଅନ୍ତ୍ ଗୋଟାଏ ବୁଲ ଷଣ୍ଢକୁ ତଡ଼ିଅଣି ଲୋକଗହଳି ଭିତରେ ପୂରାଇ ଦେଲେ । ଲୋକଗହଳି ଭିତରେ ଷଣ୍ଢ ଆସନ୍ନବିପଦର ଆଶଙ୍କାରେ ମୁଣ୍ଡତଳକୁ କରି ଦୁଇ ଶିଙ୍ଗ ବଙ୍କାଇ ପଳାଇବାର ବାଟ ଖୋଜିବାରୁ, ଗୋଟାଏ ମାରଣା ଷଣ୍ଢ ମାଡ଼ି ଆସୁଛି ବୋଲି ଯିଏ ଯୁଆଡ଼େ ପାରିଲା, ସେଆଡ଼େ ଛନ୍ନଛତ୍ର ହୋଇ ପଳାଇଯିବାକୁ ବସିଲେ । ଦକ୍ଷିଣ ରାସ୍ତା ଆଡ଼େ ପୁଲିସ କର୍ଡ଼ନ୍, ଭାଙ୍ଗି ଜନସମୁଦ୍ର ବନ୍ଧ ଉଚ୍ଛୁଳା ହୋଇ ମାଡ଼ି ଆସିବା ଦେଖି, ପୁଲିସ ପ୍ରଥମେ ଲୁହବାହା ଗ୍ୟାସ୍ ସେଲ୍ ଫୁଟାଇ ଦେଲା । ଟିଅର୍ ଗ୍ୟାସ୍ ଚାରିଆଡେ ଖେଳିଗଲା ପାତଳା କୁହୁଡ଼ି ପରି । ଏହା ଫଳରେ ଲୋକଗହଳି ଅଧିକ ଆତଙ୍କିତ ହୋଇ ଆତ୍ମରକ୍ଷା ପାଇଁ ସେହି ଦକ୍ଷିଣ ରାସ୍ତାଆଡ଼େ ମାଡ଼ିଏସିଲା ।

ତା'ପରେ ପୁଲିସ ଆତଙ୍କିତ ହୋଇପଡ଼ି ରାଉଣ୍ଡ୍ ପରେ ରାଉଣ୍ଡ୍ ଗୁଳି ଫାୟାର୍ କରି ଚାଲିଲା ଅତି ଅକୁଣ୍ଠିତ ନର୍ମମ ଭାବରେ !

ଫାୟାରିଂ ଶେଷ ହୋଇ, ଟିଅର୍ ଗ୍ୟାସ୍‌ର କୁହୁଡ଼ି ପରିଷ୍କାର ହୋଇଯିବା ପରେ ଦେଖାଗଲା, ରାସ୍ତା ମଝିରେ ଶହୀଦ ଅରୁଣ ବିଶ୍ୱାଳଙ୍କ ଶବାଧାର ମୁହଁ ମାଡ଼ି ପଡ଼ିଛି । ରାସ୍ତାରେ ଅଧିକ ଦଶଜଣ ଫୁଲକ୍ଳୋଟ ଅଉ ମଣିଷ ପାଦର ଦଳାଦଳିରେ

ମରି ପଡ଼ୁଛନ୍ତି, ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ଆଉ କେତେ ଜଣ ଆହତ ହୋଇ ପାଣି ପାଣି ବୋଲି ଚିତ୍କାର କରୁଛନ୍ତି । ଅସ୍ତଗାମୀ ସୂର୍ଯ୍ୟର ଶେଷ ଆଲୋକରେଖା ଆହତ ଓ ମୃତ ବ୍ୟକ୍ତିମାନଙ୍କ ଉପରେ ପଡ଼ି ଧୀରେ ଧୀରେ ମଳିନ ହୋଇ ଆସୁଛି ।

ଏ ଦ୍ୱିତୀୟ ଗୁଳିକାଣ୍ଡ ପରେ ବିନୋଦ, ଶ୍ରୀକାନ୍ତ ଓ ଶ୍ୟାମଳ ପ୍ରଭୃତିଙ୍କ ନାମରେ ଗିରଫ୍ ପରୱାନା ବାହାରିଲା ! ମାତ୍ର ସେମାନେ ଫାୟାରିଂ ପରେ ପରେ ଚାଲି ଯାଇଥିଲେ ଅଣ୍ଡର ଗ୍ରାଉଣ୍ଡ୍‌କୁ !

ବହୁଦିନ ପର୍ଯ୍ୟନ୍ତ ଶ୍ରମିକ ୟୁନିଅନ୍ ଅଫିସ ଦୁଆର ମୁହଁରେ ଝୁଲୁଥିଲା କେବଳ ଗୋଟାଏ ପ୍ରକାଣ୍ଡ ଅଲିଗଡ଼ ତାଲା ।



# ବିଶ୍ୱ ଦେବତା

**ଶ୍ରୀ ରାଜକିଶୋର ରାୟ**

---

ମୂର୍ତ୍ତିଟି ଉପରେ କେତେ ଗୁଳ୍ମଲତା, କେତେ ସୂତାଜାଲ । କେତେ କାଳରୁ ଏପରି ଅପରିଚ୍ଛନ୍ନ ଅବସ୍ଥାରେ ପଡ଼ିରହିଛି । ତାର ଉପରେ ଅଶ୍ୱତ୍ଥ ବୃକ୍ଷର ପତ୍ର ଝରିପଡ଼ୁଛି ଏବଂ ତାଙ୍କର ପାଖ ଦେଇ କେତେ ସରୀସୃପ ଶୁଷ୍କ ଝରାପତ୍ର ଉପରେ ଚାଲିଯାଉଛନ୍ତି ।

ସ୍ଥାନଟି ଅନ୍ଧକାର । ପାଖରେ ମନ୍ଦିର ନାହିଁ । ତେବେ କେଉଁଠୁ ଆସିଲା ଏ ମୂର୍ତ୍ତି ? ଏକାନ୍ତରେ ଏପରି ନୀରବ ନିସ୍ତବ୍ଧ ଭାବରେ କିଏ ଏହାକୁ ରଖିଦେଇ ଯାଇଛି ?

ଚିକ୍କଣ ଶିଳା ଉପରେ ଖୋଦିତ ମୂର୍ତ୍ତି । ପାଷାଣୀ ନାରୀ । ବୀଣାବାଦନ ନିରତା ଏଇ ଶିଳାରମଣୀ ଜଣା ଆଖିରେ ଚାହିଁ ରହିଥିଲା ଶୂନ୍ୟକୁ । ଅଧିର ପତ୍ର ଉପରେ ମଦିରା । ମହାକାଳ ଏହାକୁ ସ୍ପର୍ଶ କରି ବି ସ୍ପର୍ଶ କରିନାହିଁ । ଅକ୍ଷତ ରହିଛି ଶିଳା ।

କେଉଁ କାଳର ଏଇ ରମଣୀ, କାହାର ପ୍ରତୀକ୍ଷାରେ ବା ଏ ବୀଣା ବାଦନ କରୁଛି । ତନ୍ତ୍ରୀଗୁଡ଼ିକ ସ୍ଥିର, ଅଚଳ । ଅଙ୍ଗୁଳିର ପ୍ରାନ୍ତରେ ଲାଗିରହିଛି ଦୁଇଟି ତନ୍ତ୍ରୀ । ମୁହଁରେ ଢଳି ପଡ଼ୁଛି ଆସନ୍ନ ସନ୍ଧ୍ୟାର ଛାୟା । ବନଭୂମି ନିଥର ।

---

ଗାଳ୍ପିକ (୧୯୧୪) ଓଡ଼ିଆ ଗଳ୍ପ ସାହିତ୍ୟକୁ ଏହାଙ୍କର ଅବଦାନ ଅପରିମିତ । ସାଂପ୍ରତିକ କାଳର ଜଣେ ଖ୍ୟାତନାମା ଗଳ୍ପକାର । ମାନବୀୟ ସମ୍ବେଦନ, ସ୍ୱାଧୀନତାବୋଧ ଏବଂ ମୁକ୍ତି ଆନ୍ଦୋଳନ ପାଇଁ ଉଦଗ୍ର ଆଗ୍ରହ ତାଙ୍କର ଗଳ୍ପ ଲେଖାରେ ପ୍ରତିଫଳିତ । ଶିକ୍ଷା ବିଭାଗର ଜଣେ ଅବସରପ୍ରାପ୍ତ ଅଧ୍ୟାପକ, ଏବେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ଉପସଭାପତି । ତାଙ୍କର ସମଗ୍ର ରଚନା ରାୟ ରଚନାବଳୀରେ ସଂଗୃହୀତ ।

ସେଇବାଟେ ଚ୍ଲଯାଉଥିଲେ ଜଣେ ପାନ୍ଥ । ଆଗରୁ ସରଣୀ କାଟି କେତେ ପଥିକ ସେଇ ପଥ ଦେଇ ଯାଇଥିବେ । କେତେ ପଦପ୍ରାନ୍ତ ସ୍ପର୍ଶ କରିଥିବ ଏଇ ଶୀତଳ ଭୂମିକୁ; କିନ୍ତୁ ଏ ଯେ ପାନ୍ଥ ଯାଉଥିଲେ, ତାଙ୍କର ଲକ୍ଷ୍ୟ ଥିଲା ଦୂରକୁ ।

ସେ ଦୂର ଯେ କେତେ, ତାର ସୀମା କେଉଁଠି ତାହା ଅନନ୍ତ ସହିତ ମିଶିଯାଇଛି, ଅବା କେଉଁଠି ସେଥିରେ ଛେଦ ପଡ଼ିଛି, କିଏ କହିବ ? ଅକଥିତ ଏଇ ଭାବନାକୁ କିଏ ଯେ ଭାବିଥିବ, କାହାର ପ୍ରାଣରେ ଅସୀମ ଗୁଞ୍ଜନ ଶୁଭିଥିବ, କିଏ ଜାଣେ ?

ପାନ୍ଥ ଚ୍ଲୁଥିଲେ, ଚଞ୍ଚଳ ପଦକ୍ଷେପରେ ଅତିକ୍ରମ କରୁଥିଲେ ଅରଣ୍ୟକୁ । ବନାନୀର ପ୍ରଚ୍ଛାୟମାନ ଆବେଶ ଭିତରେ ପାନ୍ଥ ତୋଳି ଧରୁଥିଲେ ବନସ୍ପତିର ଗୋଟିଏ ଦଉଡି ଶାଖା ବାହୁକୁ । ମଥା ନୁଆଁଇ ବାଟ କାଟି ଚ୍ଲୁଥିଲେ—କେତେ ବେଳେ ଧୀରେ ଅବା କେତେବେଳେ କ୍ଷିପ୍ରଗତିରେ ।

ଆଗରେ ସରମଲା ବେଦବତୀ ନଦୀ—ତରଙ୍ଗକ୍ଷେପରେ ନିମନ୍ତ୍ରଣ କରୁଥିଲା ପାନ୍ଥକୁ । କହୁଥିଲା, ଆଯ ପଥିକ, ବନଭୂମି ଛୁଇଁ ତୁମେ ବହୁପଥ ଅତିକ୍ରମ କରିଛ; ଏବେ ସ୍ପର୍ଶ କର ମୋର କରତଳେ ଜଳସ୍ରୋତ, କେତେ ସ୍ନିଗ୍ଧ ଓ ତୃପ୍ତିକାରକ ଏ ବାରିପ୍ରବାହ । ସ୍ପର୍ଶ କର...ସ୍ପର୍ଶ କର···

ପଥିକ ଉଭା ହେଲେ ଓଟ ପିଠିରେ । ମୁଖରେ କ୍ଲାନ୍ତିର ଛାୟା; କଣ୍ଠ ଶୁଷ୍କ । କହିଲେ—ବେଦବତୀ, କିଛି ଭଲ ଲାଗୁନାହିଁ ଶକ୍ତ ଧରିତ୍ରୀ ଉପରେ ଛିଡ଼ା ହେଲି—ସେଠାରେ ଶାନ୍ତ ପାଇଲି ନାହିଁ । ଦେଖିଲି ମାନବ ବୋଲି ଯେଉଁ ଜୀବ ତାର ଚଣ୍ଡତା ଅପରମେୟ, ତାର ନୃଶଂସତାର ଅବଧି ନାହିଁ । ଆସିଲି ନିଥର ଅରଣ୍ୟ ଭିତରକୁ—ଛାୟାଲୋକ ଯେଉଁଠି ଖେଳ ଖେଳୁଛି, ବନବିହଙ୍ଗ ଯେଉଁଠି ଉଡ଼ିଯାଏ ଦିଗନ୍ତ ଛୁଇଁ···ସେଇ ନିବିଡ଼ ଅରଣ୍ୟକୁ ଆସିଲି । କିନ୍ତୁ ସେଠାରେ ବି ମୁଁ ଅସୁସ୍ଥ ଉଠିଗଲି । ଏଇ ଯେ ବୃକ୍ଷ ପରେ ବୃକ୍ଷମାଳା, ପତ୍ରର ମର୍ମରଧ୍ୱନିରେ ଏଇ ଯେ ବନରାଣୀର କାତର କ୍ରନ୍ଦନ, ମତେ ତାହା ଅଧୟ୍ୟ କଲା । ନା, ବେଦବତୀ ମତେ କିଛି ଭଲ ଲାଗୁନାହିଁ । ମୁଁ ଅଶାନ୍ତ ।

ବେଦବତୀର ମର୍ମେ ମର୍ମେ ଉଦ୍‌ବେଳିତ ତରଙ୍ଗପ୍ରବାହ । ସେ ଗୃହେଁ ଏଇ ପାନ୍ଥ ତାର ଅନ୍ତର ଭିତରେ ବିଳୟ ପାଉ । ସେ ତାଙ୍କୁ ବାତ ଉର୍ମିବାହୁରେ

ଗ୍ରହଣ କରିନେବ । ସେ ଆସ୍ତ । ଯେଉଁଠି ମାଟି ଦେଲା ନାହିଁ ଶାନ୍ତି ସେଠାରେ ମିଳି ଦେଉ ଆନନ୍ଦ ଓ ପ୍ରୀତି । ଚାଲିବାରେ ଯେଉଁଠି ଅନୁଭୂତ ହେଲା ଶ୍ରମ, ସନ୍ତରଣରେ ତାହା ହେବ ସାବଲୀଳ ।

ପଥିକ ଫେରି ଚାହିଁଲେ...ଦେଖିଲେ ଏକ କ୍ଷୁଦ୍ର କୃଷ୍ଣବିନ୍ଦୁ ପରିମାପରେ ସେଇ ପାଷାଣୀକନ୍ୟା, ବିଣାବାଦନରତା ସେଇ ଶୋଭନୀ ରହିଯାଇଛି ଦୂର ସୀମାନ୍ତରେ ।

ସେ ଜାଣିପାରିଲେ ନାହିଁ କେତେବେଳେ ସେ ଅତିକ୍ରମ କରି ଆସିଲେ ଏଇ ମୂର୍ତ୍ତିଟିକୁ । ଅନୁଶୋଚନାରେ ବ୍ୟଥିତ ହେଲେ । ଭାବିଲେ, ମାଟି ଅଉ ଜଳ ଭିତରେ ରହିଗଲା ଏଇ ପାଷାଣ ··ଅଥଚ ଏହାର ନିର୍ମାଣରେ ଲାଗିଛି ମାଟି ଆଉ ପାଣିର ସ୍ପର୍ଶ ।

ବେଦବତୀ ବୁଝିପାରିଲା ବିଷର୍ଣ୍ଣ ପାନ୍ଥର ମନତଳେ କି ଶୋଚନା, କି ବ୍ୟର୍ଥତା ଦେଖାଦେଇଛି । ଡାକିଲା—ହେ ପାନ୍ଥ, ସେ ମୂର୍ତ୍ତିଟିକୁ ଦୂରରୁ ଦେଖିପାରନ୍ତି ଅଶ୍ୱାରୋହୀ, ଗଜାରୋହୀ କେତେ ଚଳନ୍ତ ଜୀବ । ପୁଣି ଦେଖିପାରନ୍ତି କେବଳ ପଥ ଉପରେ ଚଳନ୍ତି ପଥିକ । କିନ୍ତୁ ଆଶ୍ଚର୍ଯ୍ୟ, ପାଖକୁ ଆସିଲେ ସେ ପାଷାଣୀ ଦୁହିତା ରହିଯାଏ ଅଦୃଶ୍ୟ । ମରୀଚିକେ ସତେ ଯେପରି ତାହା ଆତ୍ମଗୋପନ କରେ । ଏହିପରି ଚାଲିଛି କାଳସ୍ରୋତ, ଏହିପରି ଚାଲିଛନ୍ତି କେତେ ପ୍ରାଣୀ, ନିର୍ଜନ ବନକୁ ମୁଖର କରି କେତେ ବିହଗ, କେତେ ଶ୍ୱାପଦ ଥରେ ଥରେ ଏହାର ଚତୁଃପାର୍ଶ୍ୱରେ ବୁଲିଆସନ୍ତି । କୃଷ୍ଣଶୀଳାର ଏଇ କଳାବତୀ ରହିଯାଏ । ରହସ୍ୟାବୃତ । କିଏ ବା ଅଛି ଯେ ଯୁଗଯୁଗର ତମିସ୍ରାବରଣକୁ ଉନ୍ମୋଚନ କରି ଦେଖାଇଦେବ ଏ ରମଣୀ କିଏ, ଅବା ଏହାର କପାଳ ଉପରେ ଏଇ ରେଖାଟି କାହାର ?

ଅଙ୍କିତ ଏଇ ରେଖାଟିକୁ, କପାଳ ଉପରେ ଏଇ ଚିହ୍ନଟିକୁ ଦେଖିଯାନ୍ତି କିଏ କେତେ... ଶିହରଣ ଜାଗେ, ରୋମାଞ୍ଚ ଜନ୍ମେ; କିନ୍ତୁ କି ଅବ୍ୟକ୍ତ ମାଧୁରୀରେ ବର୍ଣ୍ଣଚ୍ଛାୟା ଝଲସିଯାଏ, ସବୁ ବୋଧହୁଏ ବିପର୍ଯ୍ୟସ୍ତ, ସବୁ ଆତଙ୍କିତ....

ବେଦବତୀ କହିଲା, ହେ ପାନ୍ଥ, ମୁଁ ମୃଗାକ୍ଷୀ, ଅଥଚ ମୃତବହିର୍ଭୂତ । ମୁଁ ଅନାଦି କାଳରୁ ଶୋଇଛି । କେତେବେଳେ ପ୍ରକମ୍ପ ଦେଇ ନିଜ ବକ୍ଷକୁ

ଦୋଳାଚ କରୁଛୁ । ମୁଁ ଜାଣେ, ଏ ପ୍ରସୂଶ୍ରୀଭୂତ ଲଳନା କିଏ, କେତେ ଅଶ୍ରୁ ଢାଳି ସେ ତା'ର ବନ୍ଦନୀୟଙ୍କୁ ସେଇ କାଳରୁ ଅନ୍ୱେଷଣ କରୁଛୁ, ମୁଁ ସବୁ ଜାଣେ ।

ଦେଖ ପାନ୍ଥ, ତୁମେ ଜାଣ, ମୁଁ ସଲଳବତୀ ନଦୀ ମାତ୍ର ଅଗରେ ନିବିଡ଼ ଅରଣ୍ୟ ଉପରେ ପ୍ରଶାନ୍ତ ଅନ୍ତରୀକ୍ଷ,ଆଉ ସେଇ ଦୂରରେ ପାଷାଣୀ ସ୍ଥାଣାଧାରଣୀ— ଏଇ ତ !

ପାନ୍ଥର ନେତ୍ର ମୁଗଲରେ କୁତୂହଳ । ସେ କେବଳ ବିସ୍ମାରିତ ନେତ୍ରରେ ଗୃହିଁଥାନ୍ତି । ସେ ଭାବୁଥିଲେ ଏ କେଉଁ ମୁଗ ? ସମସ୍ତ କେତେ ଆଖର ହେଲି ? ଏ କାଳକୁ ମାପିବା ପାଇଁ କାହୁ ଯନ୍ତ୍ର ଅଛି କି ?

ବେଦବତୀ ତାଙ୍କ ମନକଥା ବୁଝିଲି । କହିଲି, ନା ଯନ୍ତ୍ରଦ୍ୱାରା ପରିମାପ ସମ୍ଭବ ନୁହେଁ । ଏ ଆଲୋକବାସ୍ପ ବର୍ଷ । ଏହାର ସମସ୍ତଙ୍କୁ ପ୍ରାଣୀ ଅନୁଭବ କରିପାରିବ ନାହିଁ । ଦେଖ ପାନ୍ଥ, ଦିଗନ୍ତରେ କଳାମେଘ ଉଠିଆସୁଛୁ । ଦେଖ, ପୁଣି ତାହା ଧୀରେ ନିବିଡ଼ ହେବ । ଏବେ ଝଟିକା ଉଠିବ ଅରଣ୍ୟବକ୍ଷ ବିଦୀର୍ଣ୍ଣ କରି; ତାହା ସଙ୍ଗେ ଝଲସିଯିବ ବିଦ୍ୟୁତ୍‌ରେଖା । ଝରଝର ଝରିପଡ଼ିବ ସଲଳକଣିକା । ବନଭୂମି ହୋଇଯିବ ସ୍ନିଗ୍ଧ ।

ଦେଖ ଏଇ କାଳପ୍ରବାହ ଭିତରେ କିଏ କେତେ ନ ଆସିଛନ୍ତି । କେତେ ଅଭିଯାନ, କେତେ ବାଦ୍ୟବାଜଣା, କେତେ ସଂଘର୍ଷ, କେତେ ନିଷ୍ଠୁର ଆକ୍ରମଣ । ଆସି ଗୃଲିଗଲେ କାଳର ଉପତ୍ୟକା ଉପରେ ପାଦ ପକାଇ ଆଦିପୁରୁଷ ଋଷିଗୋଷ୍ଠୀ ପ୍ରକୃତିର ବିଶାଳ ପୁଣି ସ୍ନିଗ୍ଧମଧୁର ରୂପ ଦେଖି ସେମାନେ ହେଲେ ଅଭିଭୂତ । ତା'ପରେ ପଂକ୍ତି ବାନ୍ଧି ଆସିଲେ ଶକ୍, ହୁନ୍, ପଠାଣ ମୋଗ୍ଲ– ସମସ୍ତେ ଏ ଉପତ୍ୟକା ପାର ହେବାପାଇଁ ଗଜ, ଅଶ୍ୱ, ଉଷ୍ଟ୍ର ପୃଷ୍ଠରେ ବସି ଆସିଲେ । ଲକ୍ଷ୍ୟ କାହୁ ନାହିଁ, କେବଳ ଆକ୍ରମଣ···

ଏଇ ଆକ୍ରମଣ ତଳେ ମାନବର ଦୁର୍ବାର ଲାଳିସା, ତାହା ରାଷ୍ଟ୍ର ଜୟ ହେଉ ବା ମଣିଷକୁ ପଦାନତ କରିବାର ଜନ୍ମ ହେଉ, ବହୁରୂପରେ ସୃଷ୍ଟି କଲି ଗ୍ଳାନି ଅଉ ସ୍ଵାଭିପ୍ରତା ।

ଏତିକ କହି ବେଦବତୀ ଗୃହିଁଲି ପାନ୍ଥଆଡ଼େ । ପାନ୍ଥଙ୍କର ଚକ୍ଷୁତଳେ ନୀରଧାର·•·ସତେ ଅବା ସେ ଏଇ ଅରଣ୍ୟ-ଐଶ୍ୱର୍ଯ୍ୟ ଭିତରେ ଆତ୍ମସମାହିତ ହୋଇଯାଇଛନ୍ତି ।

କୁଳୁକୁଳୁ ସ୍ୱନରେ ସ୍ୱଚ୍ଛ ପ୍ରବାହିତା ବେଦବତୀର ତୀର ଦେଶରେ ଅସଂଖ୍ୟ ଧୂଳିରେଣୁର ବିସ୍ତାର । ସେଇଆଡ଼େ ଚକ୍ଷୁ ପ୍ରସାରିତ କରି ଛିଡ଼ା ହୋଇଥିଲେ ପଥିକ···

ବେଦବତୀ କହିଲା—ଏହି ଯେ ଶିଳାଭୂତା ରମଣୀ, ଏଇ ଅନାଦି-ସନାତନ ନାରୀର ଯୁଗେ ଯୁଗେ ଖୋଜି ଆସିଛି ତାର ପ୍ରିୟତମ ପୁରୁଷକୁ । ଆଜି ସିନା ସେ ପଥର, ନିଷ୍ପ୍ରାଣ—କିନ୍ତୁ ଦିନେ ଏଇ ବଟଚ୍ଛାୟା ତଳେ ଯେ ଟହ ଟହ ହସି ଘୂରି ବୁଲୁଥିଲା ।

ଆଜି କିନ୍ତୁ ସେ ସ୍ଥିର, ନିଷ୍କର୍ମ । ଜଗତରେ ଯେତେବେଳେ ସ୍ନିଗ୍ଧ ଶୀତଳତା ବିରାଜୁଥିଲା, ଯେତେବେଳେ ପ୍ରାଣ-ଉତ୍ସଙ୍ଗରେ ଶତ ସହସ୍ର ଶତଦଳ ପ୍ରସ୍ଫୁଟିତ ହେଉଥିଲା । ଆରଣ୍ୟକ ଶ୍ରୀ ଯେତେବେଳେ ଆଦିମ ଶାନ୍ତିରେ ସମାହିତ ଥିଲା ସେତେବେଳେ ବନ୍ୟନାରୀ ବନ୍ୟ ପୁରୁଷର ବିହାର ଆଉ ଆମୋଦ ଅସୀମ ଥିଲା । ଆଜି ଜଗତ ଚଞ୍ଚଳ, ବେଗ ହିଁ ତାର ମହତ୍ ସମ୍ପଦ ଆଉ ଆକର୍ଷଣ ।

ଏଇ ବେଗ, ଏଇ ଉଚ୍ଛନ୍ନ ଗତିପ୍ରବାହ ଭିତରେ ସେ ଆଦିମ ମନ ଆଉ ରହିବ କି ? ଦେଖ, ମୁକ୍ତତୋରଣ ଫିଟାଇ ଜପରି ଯନ୍ତ୍ରର ଘୋଷଯାତ୍ରା ଭାସି ଆସୁଛି । ଚାରିଆଡ଼େ ଯନ୍ତ୍ର ...ଯନ୍ତ୍ର...ଯନ୍ତ୍ର ମାନବ ଯନ୍ତ୍ର ପାଲଟିଛି । ତାର ଚିତ୍ତବୃତ୍ତିର କୋମଳତା ଆଉ ନାହିଁ ।

ବେଦବତୀର ଲୀଳାଚଞ୍ଚଳ ବାରିଧାରା ଭିତରେ ମୁହଁ ବୁଡ଼ାଇଲେ ପାନ୍ଥ । ଆଃ, କି ତୃପ୍ତି ....ଝର ଝର ଜଳଧାରା, ମନପ୍ରାଣ ଶୀତଳ ହେଲା ।

ପାନ୍ଥ କହିଲେ—ମୁଁ ଅହୁରି ବହୁଦୂର ଯିବି । ମୋର ଯାତ୍ରାର ଶେଷ ନାହିଁ । କିନ୍ତୁ ହେ ବେଦବତୀ, ତୁମକୁ ଛାଡ଼ିବା ପୂର୍ବରୁ ମୁଁ ଜାଣିବାକୁ ଚାହେଁ—ଏଇ ପାଷାଣୀକନ୍ୟାର କାହାଣୀ ।

ବେଦବତୀ କହିଲା—କାହାଣୀ ବୋଲି କିଛି ନାହିଁ । ମୋର ଆଖି ଆଗରେ ସେ ଦୁର୍ଘଟଣା ଘଟିଗଲା । ବିଶ୍ୱାସଭଙ୍ଗର, ମୋହଭଙ୍ଗର କଠୋର ଦୃଶ୍ୟ ମୁଁ ଦେଖିଲି ।

ଦିନେ ପ୍ରଭାତର ଅରୁଣିମାରେ ଆରକ୍ତ ଉଜ୍ଜ୍ୱଳ ବନଭୂମି ଯେତେବେଳେ ଶିହରିତ ଥିଲା, ନବ ପ୍ରସୂନର ଦୋଳାରେ ଦୋଳାରେ, କିଶଳୟର ନିଭୃତ କକ୍ଷ

ଭିତରେ ଠିକ ସ୍ୱନ ତୋଳୁଥିଲି, ଦେଖାଗଲା ଏକ କ୍ଷୁଦ୍ର ଚିହ୍ନ ଦିଗବାଳ ସ୍ପର୍ଶ କରି । ସେ ସଙ୍କେତ କ୍ରମେ ବଡ଼ ହେଲା । ଧୀରେ ଧୀରେ ତାହା ବଢ଼ିବ ଲଭି ଆଗକୁ ମାଡ଼ିଆସିଲା ।

ଦେଖିଲି ଅଶ୍ୱାରୋହୀ ଏକ ରାଜପୁତ୍ର । ଯୋଦ୍ଧୃବେଶମଣ୍ଡିତ ବଶୁଗ୍ରା ଅଳଙ୍କାର । କଟୀର ଖଡ୍ଗକୋଷ । ଶାନ୍ତ ଅରଣ୍ୟ ଅଶ୍ୱଖୁରା ଶବ୍ଦରେ ସମଥିତ ହେଲା ।

ଏଇ ରମଣୀ ସେତେବେଳେ ମୋର ତରଙ୍ଗମାଳା ଭିତରେ ମାଜଦେଉ-ଥିଲା ନଗ୍ନ ତନୁକୁ । ପ୍ରସ୍ଫୁଟିତ ପଦ୍ମସମ ମୁହଁଟି ତାର ଉପରେ ଭାସି ରହୁଥିଲା ।

ଅସିଲେ ସେଇ ରାଜପୁତ୍ର ମୋର ତଟ ଧାରେ ଧାରେ । ଦେଖିଲେ... ସ୍ୱରଚକ୍ଷୁର ମିଳନ ଘଟିଲା । ତା'ପରେ....ତା'ପରେ...ହେ ପାନ୍ଥ, କିଛି ଧାରଣା କରିପାରୁନ୍ତି··· ?

ଶୁଣ, ବନ୍ଧୁ ପ୍ରତ୍ୟେକ ସନ୍ଧ୍ୟାରେ ମୁଁ ସେମାନଙ୍କ କାକଳି ଶୁଣିଛି । ସେମାନଙ୍କର ଉଚ୍ଛ୍ୱାସିତ ପ୍ରାଣପ୍ରବାହର ଗୁଞ୍ଜନ ଶୁଣିଛି....କିନ୍ତୁ ଦିନେ ଯାହାସା ଯାହା ଜାଣିବାକୁ ପାଇଛି···

ବେଦବତୀ ଏତିକ କହି ନୀରବ ରହିଲା ।

ପାନ୍ଥ କହିଲେ—ଆଉ ବୁଝିବାକୁ ବାକି ନାହିଁ । ସେଇ ରାଜପୁତ୍ର ରମଣୀର କପାଳ ଉପରେ ରକ୍ତରେଖା ଟାଣିଦେଇ ଅନ୍ତର୍ହିତ ହୋଇଗଲେ । ବୋଧହୁଏ ମୁବତୀ ସ୍ୱୀକୁ ଥିଲା ତା'ର କପାଳ ଉପରେ ପୁରୁଷର ଅଧରସ୍ପର୍ଶ, ଯାହା ଶାଶ୍ୱତ କାଳକୁ ବିଦ୍ୟୁତ୍‌ରେଖାଭଳି ପ୍ରେମର ମହାନ୍ ସଙ୍ଗୀତ ଶୁଣାଇ ବୁଝାଇଦେବ ଏହାହିଁ ସନାତନ ସତ୍ୟ, ଏଇ ଅଧରସ୍ପର୍ଶ ନାରୀର କପାଳ ଉପରେ···ଏହା ହିଁ ନାରୀର କାମନା । ମହାରଣ୍ୟର ହୃଦ ଭିତରେ ଜୀବନ୍ତ ରହିଛି ମଣିଷର ଦିଗ୍ଭ୍ରାନ୍ତ-ଭାବର ନିର୍ମମତା । ନୁହେଁ କି ?

ବେଦବତୀର ତରଙ୍ଗରେ ଆଉ ଉଦ୍‌ବେଗତା ନାହିଁ । ମନ୍ଦପ୍ରବାହିନୀ ନଦୀର ଏ ଦୁଃଖକୁ ପାନ୍ଥ ବୁଝିପାରିଲେ ।

ବେଦବତୀ କହୁଲ—ହଁ, ଏମିତ ଦୁର୍ଘଟଣା ଘଟିଗଲ । ତା'ପରେ ପରେ ସେ ରାଜପୁତ୍ର ଏଇ ବଧୂଙ୍କୁ ଛାଡ଼ି ଉଭେଇ ଗଲେ । ଅଶ୍ୱଖୁରକ୍ଷେପ ବହୁକାଳଯାଏ ଶବ୍ଦାୟିତ ହୋଇ ରହୁଥିଲ ବନଭୂମି ଉପରେ ।

ବ୍ରଜୁକର ଝଙ୍କାରରେ ପାଷାଣୀ କନ୍ୟାର କପାଳ ଚନ୍ଦ୍ରକୁ ଏବେ ବି ଅରଣ୍ୟ ଭିତରେ ସମ୍ବାଦ ରଖିଛୁ ମହାକାଳ । ସମସ୍ତେ ଆଜି ଶିଳୀଭୂତ, କି ନାରୀ କି ପୁରୁଷ, ତାହାଙ୍କି ଏ ଯୁଗର ସ୍ୱାକ୍ଷର ।

ପାନ୍ଥ ବେଦବତୀଙ୍କୁ ନମସ୍କାର କଲେ...କହିଲେ—ଫେରିବା ବାଟରେ ପୁଣି ଦେଖାହେବ ।

ବେଦବତୀ ହସିଲା, କହିଲା—ଆଉ ମୁଁ ଧରିରଖିପାରିବ ନାହିଁ ନିଜକୁ । ବହୁ କଷ୍ଟରେ ସହ୍ୟ ଆସିଛୁ, ଆଉ ଏଣିକି ପାରିବ ନାହିଁ । ମୋ ତରଙ୍ଗ, ମୋ ଜଳରାଶି ଉପରେ ମନୁଷ୍ୟ ପ୍ରଲୁବ୍‌ଧ ହୋଇଉଠିଛୁ । ମତେ ଶୁଖାଇଦେବ, ଅବା ମୋ ଉପରେ ବନ୍ଧ ବାନ୍ଧିଦେବ । ମୁଁ କାହିଁକି ବଞ୍ଚିବ ? ଯାଆ ପାନ୍ଥ... ଯାଅ ...ଆଗକୁ କଅଣ ଅଛୁ କିଏ ଜାଣେ ? କିନ୍ତୁ ବିଶ୍ୱାଦଭରା ପ୍ରାଣରେ ଯାଅ !

ପାନ୍ଥ ଚାଲିଗଲେ !

ବୀଣାବାଦନରତା ସେଉଁ ମୂର୍ତ୍ତିଟି କପାଳ ଉପରେ କଟା ଚନ୍ଦ୍ର ଧରି ରହିଗଲା ଅନନ୍ତ କାଳକୁ...

ପୁଷ୍ପ କେତୋଟି ଝରିପଡୁଥିଲା ପାଷାଣକନ୍ୟାର ମଥା ଉପରେ....ଅରଣ୍ୟ ଅର୍ଚ୍ଚନା କରୁଥିଲା ଏଇ ବାଧରେ !



# କହିଲେ କୁଳକୁ ଲାଜ

**ଶ୍ରୀ ଭୁବନେଶ୍ୱର ବେହେରା**

---

ଆଁପଣ ପାଣିରେ ବୁଡ଼ି ମରିବା ପୂର୍ବରୁ କେବେ ଉବୁଟୁବୁ ହୋଇଛନ୍ତି ? ତଳେ ଠିଆ ହେବାକୁ ଯାଇ ଖାଲିପାଣିକୁ ମୁଠା ମୁଠା ଧରିଛନ୍ତି—'ତ୍ରାହି ମାଂ ମଧୁସୂଦନ' କହିବା ବଦଳରେ । 'ଉଆଉ-ଉଆଉ' କରି ହାତ ଗୋଡ଼ ଛୁଆଁଡ଼ି ତୁହାକୁ ତୁହା ପାଣି ଢୋକିଛନ୍ତି—ପାଣି ଭିତରେ ବୁଡ଼ିଛନ୍ତି ପୁଣି ଉପରକୁ ଉଠିଛନ୍ତି ଆଉ ପୁଣି ବୁଡ଼ିଛନ୍ତି ..ଧୀରେ ଧୀରେ ଅନ୍ଧାର ଘୋଟି ଆସିଛି ନା ? ଅଉ ତା'ପରେ କ'ଣ ସବୁ ଘଟିଲା ଆପଣ ଆଉ ଜାଣିନାହାନ୍ତି । ଝିକଏ ହାଲୁକା ଲାଗିଲା ପରେ ଆଖି ଖୋଲି ଅନାଇଲା ବେଳକୁ ଆପଣ ବାହାରେ ଚିତ୍ ଶୋଇଛନ୍ତି ! ମୃତ ଆଡ଼ିକା ଲୋକଗହଳି ଆଉ ଆପଣଙ୍କ ବିରୋଧ ସତ୍ତ୍ୱେ କେହି ଜଣେ ଭଦ୍ରଲୋକ ଅପଣଙ୍କ ଗୋଡ ଦି'ଟାକୁ ପାଦ ପାଖରେ ଧରି ଆପଣଙ୍କ ଛାତି ପାଖକୁ ଭିଡ଼ିଆଣି ପେଟ ଉପରେ ଆଣ୍ଠୁକୁ ଚାପି ଧରୁଛି । କିଏ ଜଣେ ପାଟି କରୁଛି: "ବାହାରି ଯାଉ—ବାହାରି ଯାଉ—ଆଉ ଥୋଡ଼େ ପାଣି ବାନ୍ତି କରିଦିଅନ୍ତୁ ।" ଆପଣ କହିବାକୁ ଚାହୁଁଛନ୍ତି, 'ଥାଉ ଥାଉ—ଭଲ ଲାଗିଲାଣି' ; କିନ୍ତୁ 'କାହିଁକି କେଜାଣି କେହି ଶୁଣୁନାହାନ୍ତି, ଜୋର୍ ଜବରଦସ୍ତି ଏସବୁ କରିଯାଉଛନ୍ତି ।

ଓଃ—! ଆପଣଙ୍କର ଏପରି କିଛି ଅନୁଭୂତି ନାହିଁ । ଅବଶ୍ୟ ମୋର ମଧ୍ୟ ନାହିଁ—ଖାଲି ଅନ୍ୟଠୁ ଶୁଣି କହିବା କଥା ।'ଅଚ୍ଛା—ତା'ହେଲେ ଆଉ ଗୋଟିଏ ଦେଖନ୍ତୁ ।

---

ଗାଳ୍ପିକ (୧୯୧୫--) ଏକାଳର ଜଣେ ବିଦଗ୍ଧ ଗାଳ୍ପିକ ଓ ରମ୍ୟ ରଚନାକାର । ସମ୍ବଲପୁର ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି । ସାଂପ୍ରତିକ ଜୀବନ ଧାରାର ସୂକ୍ଷ୍ମ ବିଶ୍ଳେଷଣ ତାଙ୍କର ରଚନାବଳୀରେ ପରିଲକ୍ଷିତ । ପରଂପରାର ଆଦର୍ଶ—ଗମ୍ଭୀର ମୂଲ୍ୟବୋଧକୁ ସାଂପ୍ରତିକ ସମାଜର ନୂତନ ପରିପ୍ରେକ୍ଷୀରେ ଉପଯୋଗିତା ମୁତାବକ ପ୍ରୟୋଗ କରିବାର ପ୍ରେରଣା ପ୍ରାୟ ତାଙ୍କ ଗଳ୍ପ ଓ ଅନ୍ୟାନ୍ୟ ଲେଖାରୁ ମିଳିଥାଏ । ପ୍ରକାଶିତ ଗ୍ରନ୍ଥ...'ଶୂନ୍ୟପରିଷ' (୧୯୬୭)

ଆପଣଙ୍କର ତ ଶ୍ରାବଣ ଶର୍ଦ୍ଦିକାଶ ହୋଇଥିବ ? ଛାତିରେ କଫ ଜମାଟ ବାନ୍ଧି ଯାଇଥିବ, ତୋଟି ଘଡ଼ ଘଡ଼ ଶୁଭୁଥିବ—ନିଶ୍ୱାସ ନେଲାବେଳକୁ ପୁରୀ ରଥଯାତ୍ରା ବେଳେ କଟକ ଷ୍ଟେସନରେ କୌଣସି ତୃତୀୟଶ୍ରେଣୀ ଡ଼ବା ଭିତରକୁ ଠେଲି ପଶିଲା ପରି ଲାଗିଥିବ ? ତା'ପରେ ମନେପକାନ୍ତୁ—ଯେତେବେଳେ ଛାତିରେ ଭିକ୍‌ସ ଘଷି ଦିଆହେଲା । ହେଲା ବା ଭିକ୍‌ସ ନ ହୋଇ ଅମୃତାଞ୍ଜନ ଅଥବା ଶୁଣ୍ଠି ଚୂର୍ଣ୍ଣ ପୁରୁଣା ଗରମ ଘିଆଚିଅ । ବେଶ୍ ହାଲୁକା ଲାଗିଲା ନା ?

ସେପରି ଏକ ଅନୁଭୂତିର ଏ କାହାଣୀ—ଛାତି ଭିତରେ କ'ଣ ସବୁ ଜମାଟ ବାନ୍ଧିଗଲେ ତାକୁ କିପରି ହାଲୁକା କରାଯାଇପାରେ—ସେଇ କଥା ।

କିଛୁ ଦିନ ହେବ ମୋର ମନେ ହେଲା, ଦୁଃଖ ସବୁ ଯେତେ ଯେମିତି ମୋର ଛାତିରେ ଜମାଟ ବାନ୍ଧି ଯାଉଛନ୍ତି ଆଉ ପେଟ୍ରୋଲ ଲାଇନ୍‌ରେ ମଇଳା ଜମିଗଲେ ଗାଡ଼ି ଯେମିତି ଧକଡ଼ ଧକଡ଼ କରି କେମିତି ଗୋଟାଏ ଠେଲି ହେଲାପରି ଚାଲେ ଆଉ ବନ୍ଦ ହୋଇଯାଏ—ପୁଣି ଷ୍ଟାର୍ଟ କରି ଏକ୍‌ସଲେଟରକୁ ପମ୍ପ କରି ଦେଲେ ପୁଣି ଧକଡ଼ ଧକଡ଼ କରେ—ଷ୍ଟାର୍ଟ ହୁଏ ପୁଣି ବନ୍ଦ ହୋଇଯାଏ, ମୋର ଅବସ୍ଥା ବି ଧୀରେ ଧୀରେ ସେମିତି ହେବାକୁ ଯାଉଛି ।

ମୋର ଷ୍ଟାର୍ଟ ବି କାଳେ ପୂରାପୂରି ବନ୍ଦ ହୋଇଯିବ ସେଇ ଭୟରେ ଯଥା ସମୟରେ ମୁଁ ପୁତ୍ର କଳତ୍ରଙ୍କ ଦ୍ୱାରା ରୋଗ ନିରାକରଣ ବିଶାରଦଙ୍କ ପାଖକୁ ନୀତ ହେଲି ।

ଡାକ୍ତର ପଚାରିଲେ—କେତେ ଦିନ ହେବ ଏମିତି ହେଉଛି ?

ମୁଁ କହିଲି—ହେବ—ବେଶ୍ କିଛୁଦିନ ।

: ତିନି-ଚାରି ମାସ ?

: ହେବ ।

: ଛ ଆଠ ମାସ ?

: ହୋଇପାରେ ।

: ଏମିତି ହେଲାବେଳେ ଝାଳ ବାହାରେ ?

: ଝାଳ କଥା କହୁଛନ୍ତି—ଚିଗିଡ଼ି ଯାଏ ।

: ଘୁରିଆଉ ଅନ୍ଧାର ଦିଶେ ?

: ହଁଣେ ।

: ହେକ ନାହିଁ ?

: ନାହିଁ ।

: ବେଳେବେଳେ ଛାତି ଭିତରେ କେହି ଚାପି ପେଷିଲା ପରି ଲାଗେ ?

: ଚାପି ନ ପେଷିଲେ ମଧ୍ୟ ବରି କମ୍ପା ମଧ୍ୟ ବାହିଲା ପରି ମନେହୁଏ ।

ଡ଼ାକ୍ତର ଚିନ୍ତିତ ହେଲା ପରି ମୁହଁ କଲେ—କହିଲେ, "ଇ. ସି. ଜି. ନେବାକୁ ହେବ ।"

ଇ. ସି. ଜି ପାଇଁ ସ୍ଥାନ ନିରୂପିତ ହେଲା ଏବଂ ନିରୂପିତ ସ୍ଥାନରେ ଯଥା ଦେୟ ମଧ୍ୟ ନିରୂପିତ ହେଲା । ଦେଣ୍ ନେଣ ସରିଲା ପରେ ରିପୋର୍ଟ ଦେଖି ଡ଼ାକ୍ତର କହିଲେ — ହାର୍ଟରେ କିଛି ଗୋଳମାଳ ନାହିଁ । ପରାମର୍ଶ ଦେଲେ—"ତଥାପି ଚର୍ବିକୁ – କ୍ଲୋରେଷ୍ଟେରେଲକୁ ଟିକିଏ ଜଗିବା କଥା । ବେଶୀ ତେଲ ଖାଇବେନି । ଭଜା ଅଣ୍ଡା---ନ ଖାଇଲେ ଭଲ । ମାଛ ମାଂସ ? ହଁ ସେ ସବୁ ବି ଟିକିଏ କମ୍ – ତେବେ କେବଳ ଖାଇ ପାରନ୍ତି । ଦୁଧ ଦହି ସର ? ନା – କମ୍ କରି ଦେବେ । ଲୁଣ ବି କମ୍ ।" ତା'ପରେ ଦର୍ଶନ ଟିକିଏ ଯୋଡ଼ିଦେଇ କହିଲେ--- "ମଣିଷ ବଞ୍ଚିବା ପାଇଁ ଖାଏ ସିନା, ସେ କ'ଣ ଖାଇବା ପାଇଁ ବଞ୍ଚେ ?"

ସମ୍ଭବତଃ ମୋ ଦେହର ଗୋଲେଇ ଦେଖି ବୋଧହୁଏ କହୁଛନ୍ତି । କହିଲି – ହଁ ।" ସେ ଆହୁରି କ'ଣ ସବୁ ଖାଇବା କଥା କହିଲେ । ମୁଁ କହିଲି, 'ହେଉ' । ସେ ଶେଷ ପରାମର୍ଶ ଦେଲେ---ସଂପୂର୍ଣ୍ଣ ବିଶ୍ରାମ ନେବେ । ' କହିଲି--- ଅଚ୍ଛା ।'

ଯଥା ସମୟରେ ଦ୍ୱିତୀୟ ସ୍ପେଶିଏଲିଷ୍ଟ ଡ଼ାକ୍ତରଙ୍କ ହାତୁଡ଼ରେ ପଡ଼ିଲି । ସେ ତାଙ୍କ କାନରେ ରବର ନଳୀ ଗୁଞ୍ଜି ମୋର ଛାତି ଆଉ ପିଠିରେ କୁରୁ କୁରୁ କଲେ— 'ଏହେଁ ଏହେଁ' କରାଇ କଣ ସବୁ ଶୁଣିଲେ । ଆଣ୍ଠୁ ଗଣ୍ଠି ଠୁଙ୍କିହେଲି । ଆଖି ପତା ଓଲଟାଇଲେ । ଜିଭ ଲମ୍ବାଇ 'ଏ-ଏ'-ଏ'-ଏ' କରିବାକୁ କହିଲେ ହାତରେ ରବର ବେଲ୍ଟ ବାନ୍ଧି ରକ୍ତ ଚାପ ମାପିଲେ ଆଉ ରକ୍ତ ପରୀକ୍ଷା ପାଇଁ ନିର୍ଦ୍ଦେଶ ଦେଲେ ।

ତାହା ହେଲା ଏବଂ ଯଥାଯଥ ଟଙ୍କା ପଇସା ମଧ୍ୟ ଗଣାଗଣି ହେଲା । ଡାକ୍ତର ଏଥର କହିଲେ , " ବ୍ଲଡ୍ ପ୍ରେସର ନାହିଁ—ବ୍ଲଡ୍ ସୁଗାର ନର୍ମାଲ ।" ପରାମର୍ଶ ଦେଲେ—"ତଥାପି ବୟସ୍କ ହେଲଣି ତ . ମିଠା ଯେତେ ନଖାଇବେ ସେତେ ଭଲ । ସିଗାରେଟ୍ ତ ବୋଧହୁଏ ଖାଆନ୍ତିନି—ପାନଗୁଣ୍ଡି ମସଲା ଏଭଏଡ୍ କରିବେ । ଟି' କେତେ କପ୍ ଖାଆନ୍ତି କି ? ଓ ..ଏତେ ବେଶି ? କମ୍ କରିଦେବେ - କପେ ଦି'କପ୍—ବାସ୍ । ନିୟମିତ ଖାଦ୍ୟ—ନିୟମିତ ବିଶ୍ରାମ-- ନିୟମିତ ଜୀବନ ଯାପନ—କିଛି ଚିନ୍ତା ନାହିଁ, ଆମେ ସବୁ ଅଛୁଁ ।" ମୁଁ କହିଲି ---'ଥ୍ୟାଙ୍କ' ।

କିଛି ଦିନ ଗଲା । ଗୃହିଣୀ କ'ଣ କହିଲେ କେଜାଣି ପୁଅ ଏଥର ମୋତେ ନେଲା ଆଉ ଜଣେ ଡାକ୍ତରଙ୍କ ପାଖକୁ । ନିଜ ଯୋଡ଼ି ନଜେ ଧରି, ତାକୁ ହଲାଇ ଚଷମା ଭିତର ଦେଇ ଡାକ୍ତର ଦୃଗଡୋର୍ତ୍ତି କଲେ, "ଲିଭରର ଗୋଳମାଳ ନାହିଁ ତ ?

ପଞ୍ଜରା ହାଡ଼ ତଳେ ଆଙ୍ଗୁଠିରେ କ'ଣ ମାପିଲେ, ପଚାରିଲେ, "ପାଇଖାନା କେମିତି ହେଉଛି ? ରଙ୍ଗ । ଦିନକୁ କେତେଥର ଯାଆନ୍ତି ?"

ମୁଁ କହିଲି--'ଆଜ୍ଞା ସେ କଥା କହନ୍ତୁ ନି । ପାଇଖାନା ମାଡ଼ିଲା ପରି ଲାଗେ, କିନ୍ତୁ ଗଲେ...' "ହିଁ--ସେ କଥା କହନ୍ତୁ । ଏଇ ଢ଼ିପେଣ୍ଡି । ଭାରତବର୍ଷରେ ଶତକଡ଼ା ନବେ ଲୋକଙ୍କର ଏଇ ଡ଼ିପେଣ୍ଡି, ନିଶ୍ଚିହ ଜଣାପଡେ- କିନ୍ତୁ ଲିଭରକୁ ଧରି ଦିଏ— ବେଳେବେଳେ ମସ୍ତିଷ୍କ ଆଡ଼କୁ ମଧ୍ୟ କ୍ଷେପିଯାଏ । ମଳ ପରୀକ୍ଷା କରାଇ ରିପୋର୍ଟ ଆଣନ୍ତୁ ।" 'କ୍ଲିନିକ୍ ରଲାଇବଲ ଭଲ ।"-ସ୍ଲିପ୍ ମଧ୍ୟ ରକେମେଣ୍ଡ଼ କଲେ ।

ଖାଲି ଉଆସିଲା ଡବା – କାଠି – ଛୁଣ୍ଡା କାଗଜ ଘୋଡ଼ଉଣୀ – କି, ହଟହଟା କଥା ସବୁ ! ତଥାପି ଯଥା ସମୟରେ ସେଇ ରଜନେବଲ୍ କ୍ଲିନିକ୍ ଓ ରିଲାଇବଲ୍ ରିପୋର୍ଟ ପେଶ୍ କଲାପରେ ତାକୁ ଦେଖି ଡ଼ାକ୍ତର ବାବୁ କହିଲେ, ',ଅଛି....ସାମାନ୍ୟ ଅଛି... ଗୋଟିଏ କୋର୍ସ ମେଟ୍ରନ ଖାଇ ନିଅନ୍ତୁ ।" ଫୁଟିଲା ପାଣି ଥଣ୍ଡା କରି ପିଇବେ...। ମନେ ରଖନ୍ତୁ ତେଲ ଘିଅ ଆପଣଙ୍କ ପାଇଁ ବିଷ ।"

ମୁଁ ସାବମତ ଔଷଧ ସେବନ କଲି ଏବଂ ତେଲଘିଅକୁ ବିଷ ମଧ୍ୟ କଲି ।

ଏପରି କିଛି ଦିନ ଗଲା । ଏଥର ଶୁଣିବାକୁ ପାଇଲି ଗୃହିଣୀ ପୁଅକୁ କହୁଛନ୍ତି, "ହଇରେ—ବାପା କେମିତି ଶୁଖିଲା ଦିଶୁଛନ୍ତି—ଟିକିଏ ଦେଖନ୍ତ—କେତେବେଳେ ବି ମନରେ ତାଙ୍କର ହରଷ ନାହିଁ । ଆଉ କେଉଁ ଡ଼ାକ୍ତର ପାଖକୁ..."

ପ୍ରମାଦ ଗଣିଲି । କମ୍ ପରିମାଣରେ ହେଲେ ମଧ୍ୟ ଏବେ ଯେଉଁ କ୍ଷୀରିଆ କି ମିଠା ଟିକିଏ—ଶାଗ ଖରଡ଼ା କିମ୍ବା କେବର୍ଣ୍ଣ ସିଝା କିଛି, ଅଥବା ବନ୍ଧୁମାନେ ଘରକୁ ବୁଲିବାକୁ ଆସିଲେ କପେ ଅଧେ ଚା' ମିଳୁଥିଲା, ସେସବୁ ଉପରେ ମଧ୍ୟ ଅହେତୁ ବିପଦ ଘନେଇ ଆସିବା ଦେଖି ମୁଁ ଭଦ୍ରମହିଳାଙ୍କୁ ଯେତେ କହିଲି ଯେ ମୋର କିଛି ହୋଇନି, ସେ ଶୁଣିବାକୁ ପ୍ରସ୍ତୁତ ନ ଥିଲେ—ବରଂ କିଛି ବୁଝାଇବାକୁ ଗଲେ ବେଶି କଥା ନ କହି ବିଶ୍ରାମ ନେବାକୁ ଡ଼ାକ୍ତର ମାନେ କହିଥିବା କଥା ସୁଝାଇ ଦେଉଥିଲେ । ମୁଁ କିନ୍ତୁ ଜାଣିଛି ମୋର ଠିକ୍ କ'ଣ ହୋଇଛି । ଗୃହ ଛିଦ୍ର ବାହାରେ ନ ପକାଇବା କଥା; ଏଣେ ସେ ସବୁ ନ କହିଲେ ପୁଣି ଡ଼ାକ୍ତରଙ୍କ ପାଖକୁ ନିଆ ହେବାର ଭୟ । ଅଗତ୍ୟା କ'ଣ କରିବି ? ନ କହିବା କଥା କହିବାକୁ ପଡ଼ୁଛି । ଏଥର ଆପଣ ଶୁଣନ୍ତୁ—ସେ ବି ଶୁଣନ୍ତୁ—ପୁଅ ବି ଶୁଣୁ—ସମସ୍ତେ ଶୁଣନ୍ତୁ ।

ଏକଦା ମୁଁ ସଙ୍ଗୀତ ବିଦ୍ୟା ହାସଲ କରିବାରେ ଆଗ୍ରହୀ ଥିଲି । ମୁଁ ଯାହାଙ୍କୁ ବିବାହ କରିବାକୁ ଯାଉଥିଲି ସେ ଚମତ୍କାର ଗୀତ ବୋଲନ୍ତି—ସେ କଥା ମୁଁ ଜାଣିଥିଲି । ତାଙ୍କର ଅନ୍ୟ ଭଉଣୀମାନେ ମଧ୍ୟ କଣ୍ଠ-ସଙ୍ଗୀତ-ନିପୁଣା—ସେକଥା ମଧ୍ୟ ଜଣା ଥିଲା । ବିବାହ ପୂର୍ବରୁ ନ ହେଲେ ମଧ୍ୟ ବିବାହ ପରେ ଯେ ଏମାନେ ମୋତେ ଗୀତ ଗାଇବା ପାଇଁ ବାଧ୍ୟ କରିବେ ସେ ସମ୍ଭାବନା ମୁଁ ଉପଲବ୍ଧି କରି ଥିଲି । ଚୋଟି ବସିଯାଇଛି ବୋଲି କେତେଥର ଖସିଯାଇ ପାରିବ ?—ତେଣୁ ଠିକ୍ କଲି ଗୀତ ବୋଲିବା ଟିକିଏ ଶିଖି ନେବି ।

ଗୀତ ମାଷ୍ଟ୍ରେ ହାରମୋନିୟମଟିଏ ମୋତେ ଧରାଇଦେଇ ତାଙ୍କର ସାଧ୍ୟ ସାଧନ କଲେ । କିନ୍ତୁ ଯେତେବେଳେ ଦେଖିଲେ ଯେ 'ସ ' ପରେ 'ରେ-ଗା-ମା' ଛାଡ଼ି ମୋର କେବଳ 'ପା' ହେଉଛି ଆଉ ତା,ପରେ 'ଧା' ଡେଇଁଯାଇ ସ୍ୱର ସିଧା ସଳଖ 'ନି' କୁ ଉଠିଯାଉଛି, ସେ ହତାଶ ହେଲେ । ଅଭ୍ୟାସ ତଥା ସାଧନା ବଳରେ ମଣିଷ ଅସାଧ୍ୟ ସାଧନ କରିପାରେ. କହି ସବୁଦିନ ସକାଳେ ଘଣ୍ଟାଏ

ଦୁ'ଘଣ୍ଟା ଧାଇଁ, ସନ୍ଧ୍ୟାରେ କିଛି ସମୟ ଏବଂ ଛୁଟିଦିନମାନଙ୍କରେ ଦୁ'ପହରରେ ମଧ୍ୟ ଗଣ୍ଡୁ-ମାଜନ କରିବାକୁ ପରାମର୍ଶ ଦେଇ, ଆଉ ଗଳାକୁ ନ ଚିରି ମୁକ୍ତ ଗଳାରେ ଓଙ୍କାର କରି ସର ସ୍ୱରଟିକୁ ଖୋଲି ଛାଡ଼ିଦେବାକୁ କହିଲେ । ମୁଁ ତାହାହିଁ କଲି, ମୋର ତ ନୂଆ ଗୃହସ୍ଥ ଜୀବନ —ସହରାଞ୍ଚଳ ଘର ମିଳିନି—ବିବାହ କେବଳ ପ୍ରସ୍ତାବ ଅବସ୍ଥାରେ—ଭଡ଼ା ଘରେ ଏକଲା ମଣିଷ । କହିବା ତେଣୁ ବାହୁଲ୍ୟ ଯେ ଯଥା ସମୟରେ ପଡ଼ୋଶୀମାନଙ୍କ ଗୁହରେ ଘରର ମାଲିକ ମୋତେ ଅନ୍ୟ ଭଡ଼ାଘର ଦେଖିବାକୁ ବାଧ୍ୟ କଲେ । ଅବଶ୍ୟ ତାପରେ ସଙ୍ଗୀତ ଶିକ୍ଷକଙ୍କ ଆଗ୍ରହ ମଧ୍ୟ କମିଗଲା । ମୁଁ ନୂଆ ଭଡ଼ାଘରେ ମଧ୍ୟ ମୋ' ସାଧନା ଚାଲୁ ରଖିଲି, କିନ୍ତୁ ଝରକା କବାଟ ବନ୍ଦ କରି ।

କବାଟ କିଳିବା ସତ୍ତ୍ୱେ ଯେଉଁ ବନ୍ଧୁମାନେ ମୋର ଗୀତ ଶୁଣି ପାରନ୍ତି ସେମାନେ ଆଶ୍ଚର୍ଯ୍ୟ ହୋଇ ବେଳେବେଳେ କହନ୍ତି, ଯେ ମୁଁ ଯେଉଁ ଗୀତ ଗାଇଲେ ମଧ୍ୟ ତାହା—'ଚଳଚଳରେ ନଏ ଜବାନ' ପରି ଶୁଭେ । ମୁଁ ତହିଁରେ କ'ଣ ବା କରିବି ? କିନ୍ତୁ ଯେଉଁଦିନ ଜଣେ ବନ୍ଧୁ ଟିପ୍ପଣୀ ଦେଲେ ଯେ ମୁଁ ଗୀତ ଗାଇଲେ ବାହୁନି ବାହୁନି କାନ୍ଦିଲା ପରି ଶୁଭେ, ମୋତେ ବାଧିଥିଲା ! ଏମାନଙ୍କୁ ମୋର ଗୀତ ଶୁଣିବାକୁ କିଏ କହୁଥିଲା ଯେ! ସତେ ଯେମିତି ଏଗୁଡ଼ାକ ଗୋଟିଏ-ଗୋଟିଏ ତାନ୍‌ସେନ ।

ଏ ଭିତରେ ଅନେକ ବର୍ଷ କଟିଯାଇଛି । ପୃଥ୍ୱୀ-ଶ୍ରେଣୀ ଚକାଚକା ଭଉଁରି ଖେଳୁ ଖେଳୁ ୩୦, ୩୫; ଥର ସୂର୍ଯ୍ୟଙ୍କ ଚାରିଆଡ଼େ ଘୂରି ମଧ୍ୟ ଆସିଲେଣି । ମୁଁ ମୋର ସଙ୍ଗୀତ-ଶିକ୍ଷା କଥା ପୂରାପୂରି ପାସୋରି ଯାଇଛି । କିନ୍ତୁ ଆଜି ବି ମନ ଟିକିଏ ହାଲୁକା ଥିଲେ ଗୁଣୁ ଗୁଣୁ ଗୀତ ଗାଏଁ; ଆଉ ବେଳେ ବେଳେ ପାଟିକରି ଗାଇଲାବେଳେ ମୋର ଅଜାଣତରେ କବାଟ ସବୁକୁ ଆଉଜାଇ ଦିଏଁ ।

ସେଦିନର ଘଟଣା । କ'ଣଟିଏ ଲେଖୁଥିଲି । ମନ ପ୍ରଫୁଲ୍ଲ ଥିଲା । ଲେଖା ବନ୍ଦ କରିଦେଇ ଖବରକାଗଜ ଧରି କେତେବେଳେ ଯେ ମୁଁ ମୋର ଗୀତ ମେଲି ଦେଇଛି ମୁଁ ବି ଜାଣେନି—କିନ୍ତୁ ଦୁଆର କବାଟ ମଧ୍ୟ ଆଉଜାଇ ଦେଇଛି ।

ମୋ' ନିଜ ଗୀତର ଲାଳିତ୍ୟରେ ନିଜେ ମୁଗ୍ଧ ହୋଇ ମୁଁ ଘର ଚଟାଣରେ ମୋ' ଗୋଡରେ ତାଳ ଦେଉଥିଲି ଆଉ ଟେବୁଲକୁ ତବଲା କରି ହାତ ବାଡ଼ାଉଥିଲି । କାନ ପାଖରେ କିଛି ଗୋଟାଏ ସ୍ପର୍ଶ ପାଇ ମୁଁ ଚମକି ପଡ଼ିଲି ।

'ନୃତ୍ୟେ ଘୂର୍ଣ୍ଣୀ ଘୂପଢବୃତ୍ତା' ଭଦ୍ରମହିଳା ମୋ' ପଛପଟେ କେତେବେଳୁ ଆସି ଠିଆ ହେଲେଣି ମୋର ଖିଆଲ ନାହିଁ । କହିଲେ 'କି ବଢ଼ିଆ ଗାଉଛ !' ମୋତେ ଦେଲେ, "ରେଡ଼ିଓରେ କେଉଁ ଗୋଟାଏ ଜଣାଶୁଣା ଗୀତ ଆସୁଛି—ଅଷ୍ଟ ମହାନ୍ତ, ପଙ୍କଜ କର କମ୍ବା ସଁକଧର ଆଲମଙ୍କର ଭାବ ଭଲ୍ୟୁମ ଟିକିଏ ବଢ଼ାଇ ଦେବ ବୋଲି ଯେତେବେଳେ ରନ୍ଧା ଘରୁ ଏଇଠିକି ଆସିଲି, ଦେଖିଲି ରେଡ଼ିଓ ଯେମିତି ଅଫ୍ ହୋଇ ଥୁଆ ହୋଇଛି —ଅଉ ତୁମେ ଗାଉଛ ।"

ମୁଁ କ'ଣ କରିବି ଭାବିପାରିଲିନି । ମନେହେଲା ପୁଷ କି ମାଘ ମାସର ଶୀତ ଥରୁଥରୁଆ ସକାଳେ ମୁଁ କିଆଁ ନିଆଁ ପାଖରେ ଠିଆ ହୋଇଛି । ମୁହଁରେ ଯେକରି ଗୋଟିଏ ସ୍ମିତହାସ୍ୟ ରେଖା ଖେଳାଇ ଦେଲି ।

ଦିନଯାକ ମୋର ମନର ଉଚ୍ଛାଟ ଲାଗି ରହିଥାଏ । ସଂଧ୍ୟାବେଳେ ସ୍ତ୍ରୀ ଯେତେବେଳେ କହିଲେ ପାଖଆଖ ଘରର କେତେ ସାଙ୍ଗ ସିନେମା ଯାଉଛନ୍ତି, ଭଲ ଓଡ଼ିଆ ସିନେମା, ସେ ବି ଯାଆନ୍ତେ, ମୁଁ କହିଲି, 'ପାରିବ କ'ଣ ? ମୁଁ ଘର ଜଗିବା କଥା ତ ! ସିଓର୍ ।' ତା'ପରେ ଯୋଗକଲି 'ତମର ପରା ଭଲ ଶାଢ଼ୀ ନାହିଁ—ସେଦିନ ଅଭିଯୋଗ କରୁଥିଲ—ଦୁଇଶହ ଅଡ଼େଇଶ' ଭିତରେ ଯେଉଁ ନୂଆ ଡିଜାଇନର ଘୋଡ଼ପୁଷ୍ଟ ମଠା—ଓ୍ୱାଫଲ୍ ମିଳୁଛି ସେଥିରୁ ଖଣ୍ଡିଏ କିଣି ନିଅ—ଏମିତି କେବେ କେତେବେଳେ ବାହାରକୁ ଯିବାକୁ ପଡ଼ିଲେ ସୁବିଧା ।' ସେ ଆଶ୍ଚର୍ଯ୍ୟ ହୋଇ ମୋ'ଆଡ଼କୁ ଅନାଇଲେ—କହିଲେ, 'ପଇସାର ଏବେ କେତେ ଅଭାବ ।' ମୁଁ ଉତ୍ତର ଦେଲି, 'ପଇସାର ଅଭାବ ତ ସବୁଦିନ ଥିବ, ତା' ବୋଲି ଭଲ ଶାଢ଼ୀ ଖଣ୍ଡିଏ କିଣା ହେବନି କମ୍ବା ଭଲ ମାଛ ମାଂସ ଟିକିଏ ଖିଆ ହେବନି ?' ମନେହେଲା ତାଙ୍କର ପାଟି ନ ହସୁଥିଲେ ମଧ୍ୟ ଆଖି ହସୁଥିଲା ।

ତା'ପରେ ପରେ ଆଖପାଖର ଜଳ ବାୟୁର ଅନେକ ପରିବର୍ତ୍ତନ ଘଟିଛି । ମଳୟ ପବନ ବହୁଛି—ପାଖରେ ଅମ୍ବ ଗଛ ନଥିଲେ ମଧ୍ୟ ଘର ପାଖ ସଜନା ଗଛରେ ବସି କୋଇଲିମାନେ କୁହୁ ତାନ ଛାଡ଼ୁଛନ୍ତି । ରାତି ରାତି ଧରି ଆମ ଘର ସାମନାର ତାଳ ଗଛ ମୁଣ୍ଡ ଉପରେ ଚନ୍ଦ୍ର ଦେବତା ତାଙ୍କ ତାରକା ଗହଣରେ ଦେଖା ଦେଇ ତଳକୁ ଚାହିଁ ମୁରୁକି ହସିଛନ୍ତି—ସନ୍ଧ୍ୟାବେଳେ ବନ ହଂସ ଓ ବନ ହଂସୀ ଯୋଡ଼ି ଯୋଡ଼ି ହୋଇ କାକଳୀ ରବ ଦେଇ ଠିକ୍ ଆମ ଘର ଛାତ ଉପରେ

ରକ୍ତରାଗ ରଞ୍ଜିତ ପଶ୍ଚିମ ଚକ୍ରବାଳ ଆଡ଼କୁ ଦୃଷ୍ଟି ମାରୁଛନ୍ତି, ଆଉ ଘର ସାମନାର ଗ୍ଲେଟ ଲନ୍‌ଟିର ଫାଙ୍କା ଅଂଶରେ ନୂଆ ଦୁବ ଘାସ କଅଁଳା ହଉଛି ।

ଅନ୍ୟମାନେ ତାଙ୍କ ପାଇଁ 'ରାମ ନାମ ସତ୍ୟ ହେ' ଗାଇବା ପୂର୍ବରୁ ନିଜେ ରାମ ନାମ ଗାଉଥିବା ଯେଉଁ କେତେ ବୁଢ଼ା ମୋ ସଙ୍ଗରେ ସମସ୍ତ ଭାବରେ ସାଙ୍ଗ ହେବା ପାଇଁ ମନ ବଳାଉଥିଲେ ସେମାନେ ଏବେ ଦୂରେଇ ଯାଉଥିବା ଲକ୍ଷ୍ୟ କରୁଛି । ଖାଲି ପ୍ରକୃତିର କେଉଁ କେଉଁ ମନୁଷ୍ୟ ଦେଖିଲେଣି ଯେ ମୋରି ଯେଉଁ କେତୋଟି ବାଳ ଧଳା ହୋଇଯାଇଥିଲା ସେଗୁଡ଼ିକ ଉପୁଡ଼ି ଗଲା ପରେ ସେଠାରୁ ନୂଆ କଳା ବାଳ ବାହାରୁଛି । ଆଖି କୋଣ ଆଡ଼ର ଅନ୍ଧାରିଆ କଳା ଦାଗ ଧୀରେ ଧୀରେ ଭରି ଆସୁଛି । ଆଉ ହସିବ ନା ରାଗିବ ! ମୁଁ କୁଆଡ଼େ ଖୋଦମତ ଗାଲରେ କ୍ରିମ୍ ଲଗାଉଛି । ହଂସୁକ ଗୁଡ଼ାକ ।

ସେଦିନ କଲେଜରେ କେଉଁ ଗୋଟାଏ ହଷ୍ଟେଲ ଛାତ୍ରମାନେ ମୋତେ ତାଙ୍କ ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି କରି ଡାକିଥିଲେ । ମୁଁ ମୁଖ୍ୟ ଅତିଥିଙ୍କ ଭାଷଣରେ 'ଜୀବନରେ ସଙ୍ଗୀତର ସ୍ଥାନ' ସମ୍ବନ୍ଧରେ କିଛି କହିଥିଲି । ଆଉ ପିଲାଙ୍କ ମଧ୍ୟରେ ସଙ୍ଗୀତ ଜ୍ଞାନର ଅଭାବହିଁ ଛାତ୍ର ବିଶୃଙ୍ଖଳାର ପ୍ରଧାନ କାରଣ ବୋଲି ବୋଲି ଦର୍ଶାଇ ଥିଲି । କହୁଥିଲି ଆଇନ୍‌ ଷ୍ଟାଇନ୍‌ ବେହେଲା ବଜାଉଥିଲେ । ତା'ପରେ ଆଉ କ'ଣ ସବୁ ଉଦାହରଣ ଦେବି ହଠାତ୍‌ ଖିଆଲ ନ ହେବାରୁ ନିଜେ ଗୋଟିଏ ଗୀତ ଆରମ୍ଭ କରିଦେଲି—ପ୍ରମାଣ କରି ଦେବା ପାଇଁ ଯେ ଆମେ ସବୁ ଆଜି ଯାହା ବଡ଼ ହୋଇଛୁ, କେବଳ ଏଇ ଗୀତ ଗାଇପାରିବା ଶକ୍ତି ବଳରେ ।

ମୁଁ କିନ୍ତୁ ସେଦିନ ଗୋଟିଏ କଥା ଲକ୍ଷ୍ୟ କରିଥିଲି । ମୁଁ ଯେତେବେଳେ କିଛି ଗୋଟାଏ ହସିବା କଥା କହୁଥିଲି, ମୋ ଶ୍ରୋତା ଆଉ କେହି ହସୁ ନ ଥିଲେ । ଆଉ ମୁଁ ଯେତେବେଳେ ଗୀତ ଗାଇଲି ସମସ୍ତେ ହସିବାକୁ ଆରମ୍ଭ କରି ଦେଲେ । ସେଥିରେ ହସିବାର କ'ଣ ଥିଲା ? ମୁଁ ବିବଶ୍‌ ଗମ୍ଭୀର ରାଗଟିଏ ଧରିଥିଲି । ଅବଶ୍ୟ ମୁଁ ଆଗରୁ କରିଥିବା ହାସ୍ୟରସକୁ ଏତିକି ବେଳେ ଏ ବୁଦ୍ଧୁଗୁଡ଼ାକ ବୁଝି ହସିଥିବେ, ତଥାପି.... ।

ସମୟ ଅତି ସୁନ୍ଦର ଭାବରେ କଟି ଚାଲିଯାଏ । ଦିନ ଯାଏ, ରାତି ଆସେ, ଆଉ ରାତି ଚାଲିଯାଏ ଦିନ ଆସେ—ଗିଅର ବଦଳେଇବା ଶବ୍ଦ ଶୁଣା ନାହିଁ । କି ସରଳ—କି ଚିକ୍କଣ ସମୟର ସେ ଗତି—ଅଉ ଦିନ ରାତିର ପରିବର୍ତ୍ତନ ।

ତା'ପରେ ଆସିଲା ସେ ଦିନ ।

ସନ୍ଧ୍ୟା ଆସି ଯାଇଛି । ବାଟ ଘାଟ ସୁଆଲୋକିତ । ଝିଅ ସବୁ ଝିଲ୍‌ମିଲ୍ ପୋଷାକରେ କଳରବ କରି ବୁଲୁଛନ୍ତି । ପୁଅମାନେ ଦଳ ଦଳ ହୋଇ ଏଣେ ରାସ୍ତା ମଝିରେ ସାଇକେଲ ଠିଆ କରି ଗପ ଜମେଇ ଦେଉଛନ୍ତି । ମୁଁ ମଠା ପଞ୍ଜାବୀ ପିନ୍ଧି ପାଟିରେ ପାନ ଧରି କାକ ଓ୍ୱାକିଂ ଷ୍ଟିକ୍ ହଲେଇ ହଲେଇ ସାନ୍ଧ୍ୟ ଭ୍ରମଣରେ ବାହାରିଛି । ହଠାତ୍ ଲାଇଟ୍ ଲିଭିଗଲା । ସବୁଆଡ଼େ ଅନ୍ଧାର ।

ମୁଁ ଯେଉଁଠି ଥିଲି ସେଇଠି ଠିଆ ହୋଇଗଲି ! ଟିକିଏ ଦୂରରେ ଦଳେ କଲେଜ ଛାତ୍ର । ହଠାତ୍ ଅନ୍ଧାର ହୋଇଗଲାରୁ କେହି ଜଣେ ଜୋରରେ ହୁଇସିଲ୍ ମାରିଲା । ଆଉ ଜଣେ ଇଲେକ୍‌ଟ୍ରିକ୍ ଡ଼ିପାର୍ଟମେଣ୍ଟକୁ ନିଜ ଅଜ୍ଞାନ ସ୍ତ୍ରୀର ଶ୍ରେଷ୍ଠ ଭାଇ ବୋଲି ସମ୍ବୋଧନ କଲା । ଅନ୍ୟମାନେ କ୍ଷଣିକର ନୀରବତା ପରେ ତାଙ୍କ ଗପ ଚାଲୁ କରିଦେଲେ ।

ସେମାନଙ୍କର ପ୍ରତ୍ୟେକ କଥାବାର୍ତ୍ତା ମୋତେ ସ୍ପଷ୍ଟ ଶୁଭୁଥିଲା ।

ଜଣେ କହିଲା "ହେଇଲା ଯେ, ତୋତେ କ'ଣ ଆଉ ଲୋକ ମିଳିଲେ ନି—ସେଇ ବୁଢ଼ ଭ୍ରମକୁ ଆଣିଲୁ ? ଏବେ ତୋ' ବିରୁଦ୍ଧରେ ସମସ୍ତେ ଅନାସ୍ଥା ପ୍ରସ୍ତାବ ଆଣୁଛନ୍ତି । ଲୋକଟା ସେଦିନ ଯାହା କଲା ! ସ୍ୱର ଜ୍ଞାନ କ'ଣ ଜଣା ନାହିଁ—ଗୀତ ବୋଲୁଛି । ତହିଁରେ ପୁଣି ସାହାସ ଦେଖ—ଅନ୍ୟମାନଙ୍କୁ ସଙ୍ଗୀତ ଜ୍ଞାନର ମାହାତ୍ମ୍ୟ ବୁଝାଇବ !"

ଅନ୍ୟ କେହି କେହି କଥାରେ ପାଲି ଧରୁଥିଲେ । ହଠାତ୍ ସେ ଭିତରୁ କିଏ ଜଣେ ଗୀତ ବୋଲିବାକୁ ଆରମ୍ଭ କରିଦେଲା—ଠିକ୍ ବାହୁନି କାନ୍ଦିଲା ପରି । ଅନ୍ୟମାନେ ହସରେ ଫାଟି ପଡ଼ିଲେ । ମୁଁ ଚିହ୍ନିଲି—ମୋର ସେଇ ଗୀତ ।

ଅନ୍ଧାରରେ ମଧ୍ୟ ଘରକୁ ଫେରି ଆସିବା ପାଇଁ ବ୍ୟଗ୍ର ହୋଇ ବୁଲିପଡ଼ିଲି, କିନ୍ତୁ ଠିକ୍ ସେତିକିବେଳେ ଆତ୍ମରକ୍ଷାସୂଚକ ବିକଳିଆ ସ୍ୱର ଶୁଣାଗଲା—ଜଣେ ଉତ୍ତର ଦେଉଥିଲା—'ମୁଁ କ'ଣ କରିବି ? ସଞ୍ଜୀବ ରେଡ଼୍ଡିଙ୍କୁ ତ ଡ଼ାକିଲି । ସେ କିଛି ଜବାବ ଦେଲେ ନି । ପରେ ଶୁଣିଲି ବ୍ରେଜନେଭ୍, କାର୍ଟର, ଇରାନର ଶାହ ଆଉ କିଏ କିଏ ଆସିଥିବାରୁ ସେ ଏବେ ଆମ ହଷ୍ଟେଲର ବାର୍ଷିକ ଉତ୍ସବକୁ ଆସି ପାରିବେନି ।

( ମୁଁ ଘରକୁ ନ ଫେରି ସେଇଠି ଠିଆ ହୋଇଗଲି । ଭାବିଲି ଏପରି ପରିସ୍ଥିତିରେ ସେ ବିଚାରା ଅନ୍ୟ କ'ଣ କରିପାରିଥାନ୍ତା ? ପ୍ରେସିଡେଣ୍ଟ ନ ଆସିବାରୁ ମୋତେ ଡ଼ାକିଲି । )

ସେ କହୁଥିଲା—'ତା'ପରେ ଡ଼ାକିଲି ନଡ଼ିଙ୍କି । ସେ ଲେଖିଦେଲେ ସେ ଅତି ଜରୁରୀ କାମରେ ବ୍ୟସ୍ତ ଥିବାରୁ ସେ ଆସି ପାରିବେ ନ । ମୋ ସାରଙ୍କ ଭାଇଙ୍କୁ ଡାକି ଥାଆନ୍ତି; କିନ୍ତୁ ସେ ଯଦି ହଷ୍ଟେଲରେ କଣ ନବାବୀ କଥା କହି ବସିବେ ଆମର କେହି କେହି ବୋର ହୋଇ ଯାଇପାରନ୍ତି—ତେଣୁ ଡ଼ାକିଲିନି । ସ୍ୱାଧୀନତାସଂଗ୍ରାମୀଙ୍କୁ ଡାକିଲି, ତାଙ୍କ ପାଖରୁ କିଛି ଜବାବ ଆସିଲାନି । ନିଜେ ଭୁବନେଶ୍ୱର ଦଉଡ଼ିଲି । ତାଙ୍କ ପି. ଏସ୍. କହିଲେ—'ମୁଖ୍ୟମନ୍ତ୍ରୀଙ୍କ ଅଉ କାମ ନାହିଁ ଯେ ତମ ହଷ୍ଟେଲ ଫଙ୍କସନ୍କୁ ଯିବେ—ଯାହାସ ଦେଖ, କେଉଁ ବୁଢ଼ା ହାଡ଼ାଙ୍କୁ ଡ଼ାକୁ ନା ? ମୁଁ ରାଗିଯାଇ ଟେଣ୍ ଶୁଣେଇ ଦେଲି । କହିଲି—'ଏଥର ଆସିବ ଆମ ସହରକୁ, ଭଲକରି ପାନେ ଯଦି ନ ଦେଇଛୁ ! ଇଲେକ୍ସନ୍ବେଳକୁ ଖୋସାମତ କରୁଥିବ ତା'ପରେ ଜଣେ ଦି'ଜଣ ମନ୍ତ୍ରୀଙ୍କୁ ଭେଟିଲି । ସମସ୍ତେ କାର୍ଯ୍ୟବ୍ୟସ୍ତ ଥିବା କଥା କହି ଆମ ହଷ୍ଟେଲକୁ ଆସିବାକୁ ମନା କରି ଦେଲେ । ଏଣେ ଟାଇମ୍ ଚାଲିଯାଉଛି—ଟେଷ୍ଟ ପରୀକ୍ଷା ପାଖେଇ ଗଲେ ଭଲେଣ୍ଟିୟର କେହି ବାହାରିବେନି । ଫେରିବା ବାଟରେ କୁଳପତିଙ୍କୁ ଭେଟିଲି । ସେ ଅତି ଭଦ୍ରଭାବରେ ତାଙ୍କ ଅକ୍ଷମତା ପ୍ରକାଶ କଲେ । ଆଜ୍ଞା କଣ କରନ୍ତି, କହ ?

( ମୁଁ ଭାବିଲି—ହେଲା—କୁଳପତି ଯେତେବେଳେ ଆସି ନପାରିଲେ ବିଚାରା ମୋତେ ନ ଡ଼ାକି ଆଉ କାହାକୁ ଡାକନ୍ତା ? )

ସେ କହି ଚାଲିଥାଏ—'ମୁଁ ଫେରିଆସି ସିଧା କଲେକ୍ଟରଙ୍କ ବଙ୍ଗଳାକୁ ଗଲି । ତାଙ୍କ ପି. ଏ. ମୋତେ କଲେକ୍ଟରଙ୍କ ଟୁର ପ୍ରୋଗ୍ରାମ୍ ଦେଖାଇ ଦେଲା । ଏଣେ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଶୁଣାଇ ଦେଲେଣି ଯେ ଏ ମାସ ଶେଷ ପୂର୍ବରୁ ସବୁ ବାର୍ଷିକ ଉତ୍ସବ ଶେଷ ନ ହେଲେ ପ୍ରିନ୍ସିପାଲ ଆଉ କେଉଁ ଫଙ୍କସନ୍ ପାଇଁ ଅନୁମତି ଦେବେନି । ମ୍ୟୁନିସିପାଲିଟି ଚେଆରମେନ୍ ପାଖକୁ ଦଉଡ଼ିଲି । ସେ ଭଦ୍ରଲୋକ ଭୁବନେଶ୍ୱର ଯାଇଛନ୍ତି । ତାଙ୍କ ସ୍ତ୍ରୀ କହିଲେ ଯେ ସେ କେବେ ଫେରିବେ ଜଣାନାହିଁ । ପୂର୍ବତନ ମ୍ୟୁନିସିପାଲିଟି ଚେଆରମେନ ··ସେ ଗାଁକୁ ଚଣା ଅମଳ କରିବା ପାଇଁ ଯାଇଛନ୍ତି । କଣ କରିବି କହ ? କିଏ ଜଣେ କହିଲା

ସେ ଏଇ ଜୟଗ୍ରାମ ବାବୁ କ ବୃକ୍ ଗ୍ରାମବାବୁ ବେଶ୍ ଭଲ ; କହିପାରନ୍ତି—ଲେଖା-ଲେଖି ମଧ୍ୟ କରନ୍ତି । ଡାକ ଦେଲି । କିନ୍ତୁ ମୁଁ କଣ ତାଙ୍କୁ...'

ସେ ଆଉ କ'ଣ କହୁଥିଲେ ମୁଁ ଶୁଣିନି--ଛାତି ଭିତରେ ହଠାତ୍ ଗୋଟାଏ ଅଟୁ ବାହାରି ପଡ଼ିଲା ପରି ମନେହେଲା । ଗ୍ରାମଆଡ଼ ଅନ୍ଧାର ଡଥାମି ବାଡ଼ ଠାରୁ ଠାରୁ କରି ଘରକୁ ଫେରି ଆସିବାକୁ ଚେଷ୍ଟାକଲି । କିନ୍ତୁ ମନେହେଲା ଛାତି ଭିତରେ ଗୁଡ଼ିଏ ଫୋଟକା ଗୋଟାକ ପରେ ଗୋଟାଏ ବାହାରିବାକୁ ଆରମ୍ଭ କରୁଛନ୍ତି । ଗୋଟାଏ ହାତରେ ଛାତି ଚିପି ଧରି କୌଣସି ମତେ ପାଦେ ଦ'ପାଦ ଆଗକୁ ଆସିଛୁ, ମନେହେଲା ମନେହେଲା ଯେଇ ଯେଉଁ ପେଟ୍ରୋଲ ଲାଇନ୍‌ରେ ମଇଳା ଜମିଗଲେ ଗାଡ଼ି ଧଡ଼କ୍ ଧଡ଼କ୍ ହୁଏ... ।

କେତେବେଳେ ଆଲୁଅ ଆସିଲା ମୁଁ ଆଉ ଜାଣିନି । ଯନ୍ତ୍ରବତ୍ ଘରକୁ ଫେରିଆସିଲି । କିନ୍ତୁ ଭାବୁଥାଏ ତେବେ ଏ ଆଖି ମହାନ୍ତି,... ପ୍ରଫୁଲ୍ଲ ଜଗ... ସିକନ୍ଦର ଆଲ୍‌ମଙ୍କ ସଙ୍ଗେ ତୁଳନା କ'ଣ ଟାଲ ଶାଢ଼ୀ କିଣିବାର ଫନ୍ଦି ? କାହାକୁ ଅବା ସନ୍ଦେହ କରିବ ? ଯାହାଙ୍କୁ ସନ୍ଦେହ କରନ୍ତି ସେ ନିଜେ ତ ଏଥିରେ ଜଡ଼ିତ ।

ତା'ପରେ ହିଁ ମୁଁ ଡାକ୍ତରମାନଙ୍କ ପାଖକୁ ଥରକୁ ଥର ନିଆ ହୋଇଥିଲି ଏବଂ ଦଶ୍ୟାଦି ଡାକ୍ତରମାନଙ୍କ ପରାମର୍ଶ ଯୋଗୁଁ ଖଟା ମିଠା ପ୍ରଭୃତିରୁ ବଞ୍ଚିତ ହୋଇ ଧୀରେ ଧୀରେ ଶୀର୍ଣ୍ଣ ହେବାକୁ ଲାଗିଲି । କେବଳ ଶାଗ ଖରଡ଼ା ଏବଂ କେଖଣ୍ଡିରେ ସୀମିତ ଖାଦ୍ୟଯୋଗୁଁ ମୋର ରୂପ କ୍ରମଶଃ ବାସି ବାଇଗଣ ପରି ହେଲା ଏବଂ ତାହା ଦେଖି ମୋର ବନ୍ଧୁ ବାନ୍ଧବମାନେ ଏ ସଂସାରରେ ମୋର ଲୀଳା ଖେଳା ସରିବା ଦିନ ପାଖେଇ ଆସିଲା ମନେ କରି ମୋତେ ଦେଖିବାକୁ ଆସିଲେ । ସେ ସମସ୍ତଙ୍କୁ ନିରାଶ ନ କରି ମୁଁ ଶୀର୍ଣ୍ଣତର ହେଲି ।

ମୋ ଦେହ ଖରାପ ହେବା ଶୁଣି ମୋ ଝିଅ ରାନୁ ମୋତେ ଦେଖିବାକୁ ଆସିଥାଏ । ଯଥାଯୋଗ୍ୟ ଦୁଃଖ କରି ସାରିଲା ପରେ ସେଦିନ ମା-ଝିଅ ସିନେମା ଦେଖିଯିବାପାଇଁ ବାହାରିଥାଆନ୍ତି । ମା'ଙ୍କର ନୂଆ ଶାଢ଼ୀ ଦେଖି ଝିଅ ବିଶେଷ ପସନ୍ଦ କଲା—ଶୁଣିଲି ଦୋକାନରେ ଏବେ କି ଆଉ ଖଣ୍ଡିଏ ସେମିତି ଶାଢ଼ୀ ଅଛି—କିନ୍ତୁ ତା' ପାଖରେ ପଇସା କାହିଁ ?

( ସେମାନେ ସେ ଘରେ ଲୁଗା ପାଲଟୁଥାଆନ୍ତି ଅଉ ମୁଁ ଏଘରୁ ସବୁ ଶୁଣୁଥାଏଁ । )

ଗୀନୁ ମା କହିଲେ—'ବାପାଙ୍କୁ କହନ୍ତୁ—ତୋ' ଜନ୍ମଦିନରେ ତ ଶାଢ଼ୀ ଦେଇନାହାନ୍ତି—ଏବେ କିଣିଦେବେ ।'

ଝିଅ କହିଲା—'ନାହିଁ—ବାପାଙ୍କ ଏବେ ପଇସାପତ୍ରର ଅଭାବ ଥିବ... ବିରକ୍ତ ହେବେ ।' ଗୀନୁ ମା' କହିଲେ—'ଅଭାବ କେବେ ନାହିଁ ଯେ ! ତା' ବୋଲି ଭଲ ଶାଢ଼ୀ ଖଣ୍ଡିଏ ପିନ୍ଧିବାରେ... ।'

ସେଇଠି ସେ କଥା ବନ୍ଦ କରିଦେଇ ମୋ' ଘରକୁ ଛୁଟି ଆସିଲେ । ନୂଆ ଶାଢ଼ୀର କୁଞ୍ଚ ସଜାଡୁ ସଜାଡୁ କହିଲେ—ଏ ଶୁଣୁଛ—ଝିଅ କହୁଛି ଗଲା ମାସର ତମ ଲେଖା କୁଆଡ଼େ ଭାରି ବଢ଼ିଆ ହୋଇଛି ଅଉ ସମସ୍ତେ ପ୍ରଶଂସା କରୁଛନ୍ତି ।'

(ବଦ୍ ହଜମି ପରେ ଭଲ ଏଓଁଡ଼ିଟିଏ ଆସିଲେ ଛୁଆ ଯେମିତି ହାଲୁକା ଲାଗେ—ମୋତେ ସେମିତି ଲାଗିଲା ।)

ତା' ପରେ ଟିକିଏ ରହି ଅନ୍ତେଇଲା ଢଙ୍ଗରେ ସେ କହିଲେ 'ମୋର ଏ ଶାଢ଼ୀକୁ ଗୀନୁ ବହୁତ ପସନ୍ଦ କରୁଛି । ତା' ଜନ୍ମଦିନରେ ତ ତାକୁ ଶାଢ଼ୀ ଦିଆ ହୋଇନି—ଏ ଶାଢ଼ୀ ସେ ପିନ୍ଧୁ ।'

ହାଲୁକା ମନ ନେଇ ମୁଁ କହିଲି 'ତମର ଶାଢ଼ୀ ସେ କାହିଁକି ନେବ ? ତା' ପାଇଁ ଖଣ୍ଡିଏ ସେମିତି ଶାଢ଼ୀ କିଣିଦେଲେ ହେବନି ?

ନୂଆଶାଢ଼ୀ ପରରେ ଗୀନୁ ମା'ଙ୍କୁ ବେଶ୍ ମାନୁଥିଲା । ମୁଁ ତାଙ୍କୁ ଏଥର ଭଲ କରି ଅନାଇ ପଚାରିଲି 'ଆଚ୍ଛା—ତମେ କାହିଁକି ସେଦିନ ମୋ ଗୀତକୁ ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲ କର, ସିକନ୍ଦର ଆଲମଙ୍କ ଗୀତ ସଙ୍ଗରେ ତୁଳନା କରୁଥିଲ ?

ମୁଁ ଭାବୁଥିଲି ସେ ଆଶ୍ଚର୍ଯ୍ୟ ହେବେ । କିନ୍ତୁ ସତେ ଯେମିତି ଏ ପ୍ରଶ୍ନ ଶୁଣିବାକୁ ସେ ବହୁତଦିନୁ ଅପେକ୍ଷା କରିଥିଲେ—ସାମାନ୍ୟ ହସିଦେଇ କହିଲେ—'କଣ ହେଲା କି ?'

ମୁଁ କହିଲି କ'ଣ ଆଉ ହୁଅନ୍ତା ! ମୁଁ ସତକୁ ସତ ଭଲ ଗାଏ ବୋଲି ଭାବି ସେଦିନ ହଷ୍ଟେଲ ଛାତ୍ରଙ୍କ ବାର୍ଷିକ ଉତ୍ସବରେ ଗୀତ ଗାଇ ଲୋକହସା ହେଲି ।

ସେ ପଚାରିଲେ— "କୋଉ ଗୀତ ଗାଇଲ ?" ମୁଁ କହିଲି—
"କରୁଛୁ ବନପ୍ଥ...ନ କରରେ ଗ୍ରମାବର .. " ।

ମନେହେଲା ଉତ୍ତର ଶୁଣି ସେ ସତରେ ଆଶ୍ଚର୍ଯ୍ୟ ହେଲେ ।
କହିଲେ, ସେଇଟା ତ ରାଗ ଭୈରବୀ – ପାହାନ୍ତିଆବେଳେ ଗାଇଲେ
ଭଲ – ତୁମେ ତାକୁ ସନ୍ଧ୍ୟାବେଳେ ଗାଉଥିଲ କାହିଁକି ?

ମୁଁ ପାଟି ମେଲା କରି ତାଙ୍କୁ ଅନାଇଲି – କହିଲି-- କ'ଣ ହେଲା ।
ଏମିତି କଣ କେଉଁ ରାଗ କେତେବେଳେ ବୋଲା ହେବ ତାର ବି କିଛି
ଧରାବନ୍ଧା ନିୟମ ଅଛି ? ସେ କହିଲେ – 'ନିଶ୍ଚୟ ନାହିଁ ସେ – ପ୍ରତ୍ୟେକ ରାଗର
ଗୋଟିଏ ଗୋଟିଏ ପ୍ରଶସ୍ତ ସମୟ ଅଛି । ଯେମିତି ଆଶାବରୀ ପାଇଁ ମଧ-ରାତ୍ରି ।

ମୁଁ ପଚାରିଲି – 'ସଂନ୍ଧ୍ୟା ପାଇଁ ?'

ସେ କହିଲେ – 'ସନ୍ଧ୍ୟା ପାଇଁ ରାଗ ବହାଗ ଭଲ · ଏଇ ଯେଉଁ ପ୍ରିୟାବିନା
କୈସେ ରହନ୍ତୀ ରଜନୀ ।'

ମୁଁ କହିଲି 'ହେ ଭଗବାନ ! ମୁଁ ପୁଣି କଲେଜ ପିଲାଙ୍କ ସାମନାରେ
ଗାଇବ – 'ପ୍ରିୟା ବିନା କୈସେ...।'

ରାନୁ ମା ହସି ଉଠିଲେ । କହିଲେ – 'ରାଗ ବହାଗ ବି ତମ ଗଳାରେ
ଭଲ ଶୁଭିବନି – ତମ ଗଳା ପାଇଁ ରାଗ ଆଶାବରୀ ହିଁ ସବୁଠୁ ଭଲ ।

ମୁଁ କହିଲି – 'ରାଗ ଆଶାବରୀ ? ମଧ-ରାତ୍ରରେ ? କିଏ ଶୁଣିବ ?'

ସିନେମା ଯିବା ପାଇଁ ବାହାରି ଯାଉଁ ଯାଉଁ ସେ କହିଲେ – 'କାହିଁକି ?
ଅଧ ରାତିରେ ତମ ଗୀତ ଶୁଣିବାପାଇଁ କଣ ଏ ଘରେ ଲୋକ ନାହାନ୍ତି ?

ରାନୁ ଆଉ ରାନୁ ମା ସିନେମା ଚାଲିଗଲେ । ମୁଁ ହଠାତ୍ ଅନୁଭବ
କଲି ମୋର ଛାତି ପୂରାପୂରି ହାଲୁକା ହୋଇଯାଉଛି ଏବଂ ସେ ରୁଦ୍ଧ ହେଲା
ଭାବ ଆଉ ନାହିଁ । କିଛି ଗୋଟାଏ ଦୋଷ କରିଥିଲେ ସେ ଦୋଷଟିକୁ ଅନ୍ୟ
ଆଗରେ ପ୍ରକାଶ କରିଦେଲେ ପାପକ୍ଷୟ ହୋଇଯାଏ ବୋଲି ମୁଁ ଶୁଣିଥିଲି ।
କିନ୍ତୁ ମନ ଭିତରେ ଏମିତି ଦୁଃଖ ଜମାଟ ବାନ୍ଧି ଯାଇଥିଲେ ଦୁଃଖର କାରଣଟିକୁ
ଖୋଲଖୋଲ ପ୍ରକାଶ କରିଦେଲେ ଦୁଃଖଟି ଯେ ଏମିତି ତରଳି କେଉଁବାଟ
ଦେଇ ବାହାରକୁ ନିଗିଡ଼ିଯାଏ, ସେ କଥା ମୁଁ ଏଥର ପ୍ରଥମ ଜାଣିଲି ।



# ଭଙ୍ଗା ଖେଳଣା

ଶ୍ରୀ କିଶୋରୀ ଚରଣ ଦାସ

ବଗିଚାର ଫାଟକରେ ଖରା । ଯେଉଁଠି ଧାଡ଼ିଏ ଗେଣ୍ଡୁ ଫୁଲ ଫୁଟିଛି, ସେଇଠି ଖରା ଛୁଇଁ ଯାଇଛି । ଫୁଲ ଅଧେ ଖରାରେ, ଅଧେ ଛାଇରେ । ଅଧେ ଖରା ପୋଉଁଛି, ଆଉ ଅଧିକ ବେଳେ ଶୀତରେ ଥରି ଯାଉଥିବ । ଏପାଖ ଫୁଲରେ ପ୍ରଜାପତି ବସିଛି—ଆଉ ପାଖକୁ ଯିବ ନାହିଁ ? ହେଇ ଗଲା—ଗଲା । ଦୂର, ପୁଣି ଫେରି ଆସିଲା । ଦୁଷ୍ଟ, ! ଏପାଖ ଫୁଲ ହସୁଛି; ଗୋଟି ଗୋଟି କରି ସବୁ ପାଖୁଡ଼ା ଦେଖାଇ ହସୁଛି । ଆରପାଖ ଫୁଲ ହସୁ ନାହିଁ । ଶୀତରେ ମେଞ୍ଚାହୋଇ ଅନେଇଛି ତଳକୁ । ହାତରେ ଧରିଲେ ହାତ ଥଣ୍ଡା ହୋଇଯିବ, ଫୁଲ ଉଷୁମ ହେବ ନାହିଁ ।

(ଗୋଡ଼ରେ ଚନାବାଦାମ ଚୋପାଟା ମକଚି ହୋଇଗଲା । ଗୀତା ତାକୁ ପାଦରେ ଠେଲି ପକାଇ ଦେଲା ତଳକୁ, ଦଶମଲ୍ଲି ସେବତୀ ଗଛ ମୂଳକୁ । ଦଶବର୍ଷର ଝିଅ । ବଡ଼ଦିନ ଛୁଟିର ଗୋଟିଏ ଦି'ପହର—ବାରି ପାହାଚରେ ବସି ଅନେଇଛି ଖରାକୁ । ଭାବନାରି ଛବି ଦଉଡ଼ୁଛି ମନ ଭିତରେ ।)

ଆମ ସ୍କୁଲରେ ବଡ଼ଫୁଲ ଅଛି । ଗୋଲ ହୋଇ ହଳଦିଆ ପାଖୁଡ଼ା । ସନ୍ ଫ୍ଲାୱାର୍ । କୁଳଆ କହେ ସୁରଜମୁଖୀ କୁଆଡେ ଖାଲି ସୂର୍ଯ୍ୟକୁ ଅନେଇଥାଏ । କୁଳଆଟା ମିଛୁଆ ।

---

ଗାଳ୍ପିକ (୧୯୨୪—) ସ୍ୱାଧୀନତା ପରବର୍ତ୍ତୀ କାଳର ଜଣେ ବିଶିଷ୍ଟ କଥାକାର—ଚଳନ୍ତି ଜୀବନର ବାସ୍ତବ-ସମସ୍ୟାବଳୀ ଏବଂ ତାହାର ପ୍ରତୀକାତ୍ମକ ପ୍ରକାଶ ହେଉଛି ତାଙ୍କ ଗଳ୍ପ-ଲେଖାର ମୂଳଗୁଣ । କାହାଣୀର ଅନ୍ତସ୍ଥଳରେ ଭାବର ସାଙ୍କେତିକ ପ୍ରବାହ ତାଙ୍କ ଗଳ୍ପକୁ ମର୍ଯ୍ୟାଦାବନ୍ତ କରି ତୋଳିଛି । ଗଳ୍ପଗ୍ରନ୍ଥ 'ଠାକୁର ଘର' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ୧୯୭୬ରେ ପୁରସ୍କୃତ । ଅନ୍ୟାନ୍ୟ ଗଳ୍ପ ଗ୍ରନ୍ଥ-ଭଙ୍ଗା ଖେଳଣା, ଲକ୍ଷ ବିହଙ୍ଗ, ଘରବାହୁଡ଼ା ।

ସନ୍‌ଫ୍ଲାଓ୍ୱାର୍ ସୁନ୍ଦର ନୁହେଁ । ଖାଲି ବଡ ମୁହଁ; ମିସେସ୍ ଘୋଷାଳଙ୍କ ପରି । ହୋ-ହୋ ହୋଇ ହସନ୍ତି । ଦାନ୍ତଗୁଡ଼ା ବଡ଼ ବଡ଼ ଦେଖାଯାଏ । ଲମ୍ବା କୋର୍ଟରେ ବୋତାମଗୁଡ଼ା ଏତେ ବଡ଼ବଡ଼ । ମୋଟା ଗୋରା ହାତପାପୁଲିରେ ଟେବୁଲ୍ ବାଡ଼ାନ୍ତି । ଚୁପ୍ ଟକିଙ୍ଗ୍ ।

ମାଷ୍ଟ୍ରେ ଅସି ନାହାନ୍ତି । ବୋଉ ଶୋଇଛି । ମୁହଁ ସୁନ୍ଦର । ହେଲେ ବୋଉ ଖାଲି ରାଗୁଛି ଆଜିକାଲି । ହସିଲେ ତା ମୁହଁ ସୁନ୍ଦର ଦେଖାଯାଏ, ରାଗିଲେ ଅସନା ଦେଖାଯାଏ । ମିଛଟାରେ ରାଗୁଛି ମୋ ଉପରେ । କାଲି ରାଜୁ ମୋ ଛବି ବହି ଚିରିଦେଲା, ମୋ ରଙ୍ଗ ପେନ୍‌ସିଲ ଭାଙ୍ଗିଦେଲା; ଆଉ ମୁଁ ମାରିଲେ ଦୋଷ ହେଲା ମୋର ବୋଉ । ମୋତେ ମାରିଲା, ରାଜୁକୁ ବି ମାରିଲା । ଖାଲି ପାଟି କଲା, "ତମେ ଗୁଡ଼ାକ ମରିଯାଆନ୍ତ, କି କୁଳାଙ୍ଗାର ଛୁଆ ..।" ବୋଉ ଖାଲି ରାଗୁଛି, ମିଛରେ ରାଗୁଛି ।

ବୋଉ କୁଳିଆ ଉପରେ ବି ରାଗୁଛି, ରାଗି କରି ସେ ଦିନ ଦୁଧଗିଲାସଟା ଠେଲିଦେଲା ଯେ ଗିଲାସଟି ଭାଙ୍ଗିଗଲା । ଆଉ ଆମେ ଭାଙ୍ଗି ଥିଲେ !

ଝର ଗଲାଯ ସେ କାନା ଗଛ ଯାଏ । ଖାଲି ଲମ୍ବା ଲମ୍ବା ବଡ଼ ବଡ଼ ପତର । ଫୁଲ ବୋଲି କିଛି ନାହିଁ, ଆମ ସ୍କୁଲରେ କେତେ ଫୁଲ ଫୁଟିଛି, ନାଲିଆ, ହଳଦିଆରେ ନାଲି ଛିଟା । ଶୋଭା ସେଦିନ ଗାଳି ଖାଇଲା ଫୁଲ ଛିଣ୍ଡାଇଲା ବୋଲି । ବୋଉ ଆମ ବଗିଚାକୁ ମୋଟେ ଦେଖୁନାହିଁ ଆଜିକାଲି; ଖାଲି ମାଳି ଉପରେ ରାଗୁଛି ।

ଶୀତ କଲାଣି, ପଶି କୁକୁରଟା ବୋକା । ଘାସରେ ଗଡୁଛି । ଶୀତ କରୁନାହିଁ ତାକୁ ? ତାଙ୍କ ଘରର ସେ ଅପରିଚ୍ଛନିଆ କାଳିଆ କୁକୁରଟା ଆସିଲେ ଭୁସ୍ କରି ଦଉଡ଼ି ପଳାଇବ ବଦମାସ୍ ।

ହେଇଟିରେ ଗୋଟାଏ ପ୍ରଜାପତି । କେଡ଼େ ସୁନ୍ଦର ଚିତ୍ରିଆ ପ୍ରଜାପତି, ହଳଦିଆ ଦେହରେ କଳା ଗାର । ଚିତ୍ରିଆ ପାଟଳି କର୍ଦଳୀ ! ଚିତ୍ରିଆ କାନାଫୁଲ, ଯାଉଛି ଧରିବି । ଗଲା—ଗଲା,—ଉଡ଼ିଗଲା । ଗଲା ତାଙ୍କ ଘରକୁ । ଡେଣାକୁ ଖାଲି ଉଠଉଛି, ପକଉଛି, ପଶି ଲଙ୍ଗୁଡ଼ ତାର ହଲଉଛି । ସେମିତି । ଏକ—ଦୁଇ—ତିନ୍—ଚାର୍ ।

ତାଙ୍କ ଘରଆଡ଼କୁ ଗଲା,—କୁଆଡ଼େ ଗଲା ? ହେଇ, ତାଙ୍କ ଘର ବାପା, ଆସି ଗଲେଣି ତାଙ୍କ ସାନ ପୁଅକୁ କୋଳରେ ଧରି । ଏତେ ଜଲଦି ଅଫିସରୁ ଅସି

ଗଲେଣି । ଆଉ ଆମ ବାପା ଆସିବେ ସନ୍ଧ ପହରକରେ ।

ତାଙ୍କ ପୁଅକୁ ଧରି ଗେହ୍ଲା କରୁଥିବେ, ଚକେଚକ ଦେଖାଉଛନ୍ତି । ତା ନାଁ କଣ ତ,—ଟୁନୁ ? ଆମର ଯେମିତି ଗୋଟିଏ ଗ୍ଲେଟ ଗିଲ ଥାଆନ୍ତା କି ! ସାଙ୍ଗ ବନ୍ଧୁଙ୍କର ମଜା ବାହାରି ଯାଆନ୍ତା । ବୋଉ ତାକୁ ଗେହ୍ଲା କରନ୍ତା । ରାଗନ୍ତା ନାହିଁ ।

ଆମ ବାପା ଆମକୁ ଗେହ୍ଲା କରନ୍ତି ଯେ, ସାନୁ ଝିନୁଙ୍କୁ ବେଶି ଗେହ୍ଲା କରନ୍ତି । ମୁଁ ବଡ଼ ହୋଇଗଲିଣି ପରା । ବାସନ୍ତୀ କହେ ତା ବାପା କୁଆଡ଼େ ତାକୁ ଯାଉଣୁ ଆସୁଣୁ ଗେହ୍ଲା କରନ୍ତି । ସକାଳୁ ଥରେ, ସଞ୍ଜରେ ଥରେ, ଆଉ ମଝିରେ ଯେତେ ଇଚ୍ଛା ସେତେ—ଫୁଲେଇଦଉଥା ।

କିନ୍ତୁ ବାପା ଆଜିକାଲି ତ କାହାରିକୁ ଗେହ୍ଲା କରୁନାହାନ୍ତି । ଫେରିବେ ବେଳ ହେଲାରୁ, ଗୁମ କରି ବସିଯିବେ ଖଟ ଉପରେ । କିଛି ଟିକିଏ କହିଲାବେଳକୁ —ଓଃ, ବିରକ୍ତ କର ନାହିଁ ମଣିଷକୁ । ଯାଅ ନା ଖେଳିବ । ବୋଉ ପଚାରିବ, ଖାଇବାକୁ ଆଣିବି ? କିଛି ଦରକାର ନାହିଁ—ଆସ୍ତେ କରି କହିବେ । ହସିବେ ନାହିଁ ।

କଣ ହୋଇଛି ବାପାଙ୍କର ? ଆଗେ ତ ଏମିତି ନ ଥିଲେ । ଆମେ ଯେତେବେଳେ ପୁରୀରେ ଥିଲେ, କେତେଦିନ ହେଇଗଲାଣି, ବାପା ଦିନ ଥାଉଣୁ ଅଫିସରୁ ଫେରିବେ । ବୋଉ ନିଜେ, ରୋଷେଇଘରେ ପଶି ପୁରି, ଅଳୁଭଜା ତିଆରି କରୁଥିବ । ଧୂଆଁ ଆଖି କାନରେ ପଶିଯାଉଥିବ । ବାପା ସିଧା ଆସି ମୋତେ କୋଳକୁ ଟାଣିନେଇ ଗେହ୍ଲା କରିବେ । ତା ପରେ ବୋଉକୁ ଗେହ୍ଲା କରିବେ । ବୋଉ ଚିଡ଼ୁଥିବ । ବାପା ଖାଲି ହସୁଥିବେ !

ବାପା କଣ ବୁଢ଼ା ହୋଇ ଗଲେଣି ? କାହିଁ, ଦାନ୍ତ ପଡ଼ିନାହିଁ ତ' ବାଳ ବି ପାଚି ନାହିଁ । ରମା ଅପାର ଜେଜେ କେତେ ବୁଢ଼ା, ବାଳସବୁ ଧଳା ହୋଇଗଲାଣି । କେତେ ହସନ୍ତି ସେ । ଆମକୁ ସବୁ ପାଖକୁ ଟାଣି ଲଜେନସ୍ ଦିଅନ୍ତି—ଗୀତ ଶିଖାନ୍ତି ।

ବାପା କେତେ ଗୀତ ଶିଖାଉଥିଲେ ଆଗେ । ଭଜନ, ସିନେମା ଗୀତ, ହିନ୍ଦି, ଓଡ଼ିଆ— । ରଘୁପତି ରାଘବ ରାଜାରାମ...ଦେଖ ହମେ ଆଜାଦୀ ମିଳା...।

(ଗୀତା ଗୁଣୁଗୁଣୁ ହୋଇ ଗୀତ ଆରମ୍ଭ କରଦେଲା । ଗୋଡ଼ ଉପରେ ତଳକୁ ପକାଇଲା । ତା'ପରେ ହଠାତ୍ ବନ୍ଦ ହୋଇଗଲା । ତାର ଟ୍ରେଟିଆ ମୁହଁ ଗମ୍ଭୀର ହୋଇ ନରମ, କାନ୍ଦୁରା ହୋଇଥିଲା—ଟିକକରେ କାନ୍ଦି ପକାଇବ ଯେମିତ ।)

ବାପା କାନ୍ଦୁଥିଲେ । ବାପା ଆଉ ଗୀତ ଗାଇବେ ନାହିଁ । ବାପା ବୁଢ଼ା ହୋଇ ଗଲେଣି ।

ସେଦନ ଅଧରାତ । କଣ ଡ଼ର-ସପନ ଦେଖି ନିଦ ଭାଙ୍ଗିଲା ବେଳକୁ ଦେଖେ ଅନ୍ଧାର ଜଳୁଛୁ, ବାପା ଅନେଇଛନ୍ତି ଉପରକୁ । ଆଉ କାହା ଭଳିଆ ଆମ ବାପା ପର ନୁହେଁ । କାନ୍ଦୁ ନ ଥିଲେ ଯେ, ମୁଁ ଭାବିଲି କାନ୍ଦିବେ । ଡ଼ର ମାଡ଼ିଲା । 'ବାପା' ବୋଲି ପାଟି କରବାରୁ ଚମକି ପଡ଼ି ମୋ ଆଡ଼କୁ ଅନେଇ କହିଲେ, 'ଶୋଇପଡ଼, କାହିଁକି ପାଟି କରୁଛୁ ?' ସେ ବାପା ଆମ ବାପା ନୁହେଁ । ବାପାଙ୍କର କଣ ହୋଇଛି ?

ଟିଂ ଟିଂ ଟିଂ । ମାଷ୍ଟ୍ରେ ଆସିଲେଣି ? ନାଁଇ—ଗୁଟିବାଲା । ବୋଉ ଉଠିବ ।

ଭେଁ—ଏ—ଏଁ... । ବଳୁ ନିଦରୁ ଉଠି କାନ୍ଦିଲଣି । ବୋଉ ଉଠିବ । ଚିଡ଼ିବ ମୋ ଉପରେ ।

"ଗୀତା—ଏ ଗୀତା, କୁଆଡ଼େ ଗଲୁ ଯେ । ପଢ଼ା ନାହିଁ, ପଢି ନାହିଁ, ଯାତ ମାଇକିନିଆଙ୍କ ପର ବସିଥିବ ଯାଇ କେଉଁଠି ।"

"ଯାଉଛି—ବୋଉ !"

"ଚକା ଚକା ଭଉଁରି
ମାମୁଁ ଘର ଚଉଁରି
ମାମୁଁ ମୋତେ ମାଇଲେ..."

ହେଇ ଖଳୁ,—ହାତ ଛୁଡ଼ନା—ନଳିଦା ଗୋଡ ପକା ।
ଧ୍ୱନ, ରୁ ମୋ ହାତ ଧର ।

ଅଚ୍ଛା ଚାଲ, ସ୍କୁଲ ଖେଳ ଖେଳିବା, କୁହ—

'ରିଙ୍ଗା ରିଙ୍ଗା ରୋଜେସ୍
ପକେଟ୍ ଫୁଲ୍ ଅଫ୍ ପୋଜେସ୍ ।

(ଗୀତାକୁ ନେଇ ରଜୁ, ବଜୁ ଓ ପଡ଼ଶାଘର ପୁନି ନୂଆ ଗୀତ ଆରମ୍ଭ କରିଦେଲେ । ସମସ୍ତଙ୍କ ସାଙ୍ଗରେ ସବା ସାନ ବଜୁ ବୋଲୁଥାଏ 'ଲିଙ୍ଗା ଲିଙ୍ଗା ଲୋଜେସ୍—ସକାଳର ହେମାଳ ଛାଡ଼ି ନ ଥାଏ । ଅଧଫଟା, ଅଦାରକାଶ ମେଘକୁ କାଟି ଖରା ଆସୁଛି ଏତେବେଳେକେ ।)

"ଅଲ୍ ଫେଲ୍ ଡାଉନ୍ ।"

ଲଥ୍ କରି ବସିପଡ଼ିଲେ ସମସ୍ତେ । କିଛି ସମୟ ବିଶ୍ରାମ । ଗୀତା ଅନେଇଲା ସାମନାକୁ—ଡାହାଣ କଡ଼ରେ ପଧାନଘର ବାରିକୁ ଲାଗି ପାଣିନାଳ । ଆଗରେ ଘାସ ପଡ଼ିଆ ।

ଅଥାନ ଥାନରେ ପଥର ଓ ବୁଦୁବୁଦିକିଆ ଗଛ । ତା ସେ ପାଖକୁ ଉଇହୁଙ୍କା ଓ କାହିଁ ଦୂରରେ ବାପାଙ୍କର କଚେରି ନାଲିଆ କୋଠା । ନୂଆ ଖରା ଆସି କାହାକୁ କେଉଁଠି ଛୁଇଁଦେଉଛି ।

ନାଳ ପାଖରେ ସେମୁଡ଼ା ପଥର ନୁହେଁ, ଖଣ୍ଡେ ଖଣ୍ଡେ ହୀରା । ସେ ସବୁକୁ ନେଇ ଆସି ଗୋଲ ଗୋଲ କରି କାଟିଦେଲେ କେଡ଼େ ବଡ଼ ହାର ହୋଇଯିବ । ମାଷ୍ଟ୍ରେ କହନ୍ତି, ହୀରା ସବୁଠୁ ଦାମିକା । ସବୁଠୁ ଚକ୍‌ଚକ୍, ଅନ୍ଧାରରେ ଆଲୁଅ କରିଦେବ । ବୋଧହୁଏ ଖୁସି ହେବ । କହିବ ଦେଖିଲଣି, ଗୀତା ମୋତେ ପ୍ରେଜେଣ୍ଟ ଦେଇଛି ।

କିଏ ଆସୁଛି ପଧାନ ଘରବାଟେ । ବାବୁଆ ଓ ତା ବାପା । ବାବୁଆ ଶାଳୁଧ ସ୍ୱେଟର ପିନ୍ଧିଛି । ହାତରେ ଖଣ୍ଡେ ବାଡ଼ି । ମୋଟା ଟୋକା । ଗେଲ୍ହା ଟୋକା ସବୁ ଭାଙ୍ଗି ଭୁଙ୍ଗି ଦେବ ଏଇକ୍ଷଣି । କହିବ ଖେଳିବା 'ଅପି ନାହିଁ, କାନ ନାହିଁ, ବାଜିଗଲେ ଦୋଷ ନାହିଁ ।' ସମସ୍ତଙ୍କୁ ପିଟିବ । କିଏ କାନ୍ଦିଲେ ବାପ ପାଖରେ ଗେହ୍ଲେଇ ହେବ । ମାଇଚିଆ ଟୋକା, ସବୁବେଳେ ବାପ କାନ ଧରି ବୁଲୁଥିବ । କ୍ଲାସରେ ତ ଫେଲ୍ ହେଉଛି, ଖାଲି ଫୁଟାଣି କାହିଁରେ କଅଣ ?

ତା ପାଖରେ ତା ବାପା । ଗୋରା ହୋଇ, ପତଳା ହୋଇ, କେଡ଼େ ସୁନ୍ଦର । ସବୁବେଳେ ମୁରୁକି ମୁରୁକି ହସୁଥାନ୍ତି । 'କିଆଁ ବୋଉ, ଭୋକ କଲାଣି, କଣ ଖାଇବାକୁ ଅଛି' କହି ଘର ଭିତରକୁ ପଶିଯିବେ । ଛବୋଉ ହସେ । ଆଲମାରିରୁ କଣ ଆଣିଦିଏ, ନହେଲେ ରୋଷେଇଘରକୁ ପଶିଯାଏ କିଛି ତିଆରି କରିଦେବାକୁ ।

ବନୁଦାଦା ଗୋରା, ସୁନ୍ଦର । ବାବୁଆଟା ମୋଟା, ଅସନା । ତା ବୋଉ ବି ସେମିତିକା, କିନ୍ତୁ ମୋଟା ନୁହେଁ । 'ଖୁଡ଼ୀ' କହିଲେ ମନା କରନ୍ତି, କହନ୍ତି କହ ମାଉସୀ । କୁଆଡ଼େ ଯାଆନ୍ତି ନାହିଁ । ଖାଲି ଦର୍ପଣ ପାଖରେ ବସି ମୁଣ୍ଡ କୁଣ୍ଡାନ୍ତି । ଅଉ କୁଆଡେ ତନଓଲ ଗାଧଅନ୍ତି ।

'ହଇ ଲୋ ଗୀତା, ବୋଉ ଅଛି ?'

ବାଡ଼ିରେ ଠକ୍ । 'ଆଟେନ୍‌ସନ' . . ବାବୁଆ ଗର୍ଜୁଛି ।

'ହଁ, ଯାଉଛି । ବାବୁଆର କଣ ସ୍କୁଲ ନାହିଁ ବନଦାଦା ?'

'ନୋ, ନୋ, ନୋ—ବାପା ସ୍କୁଲ୍ ବନ୍ଦ କରି ଦେଇଛନ୍ତି । ବାପା ଦେଖିଲ, ଗୀତା ମୋତେ ଚଡ଼ଉଛି ।

ମୁରୁକିହସା ଦେଇ, ଦୁହିଁଙ୍କି ଟିକିଏ ଟିକିଏ ଥାପୁଡ଼େଇ ଦେଇ ବନୁଦାଦା ଭିତରକୁ ପଶିଗଲେ । ଏଣେ ବାବୁଆର ନେତୃତ୍ୱରେ ଖେଳ ଚାଲିଲା । ଖେଳ ନୁହେଁ, ଦଉଡ଼ାଦଉଡ଼, ଗୋଡ଼ାଗୋଡ଼ି । ଗୀତା ଏକୁଟିଆ ପଡ଼ିଗଲା । ନିଜକୁ ଏକୁଟିଆ କରିଦେଲା ବୋଲି କହିଲେ ଭୁଲ ହେବନାହିଁ ।

ବୋଉ ଓ ବନୁଦାଦା ବାରିପଟକୁ ଗଲେଣି । ବନୁଦାଦାଙ୍କ ହସ ଶୁଭୁଛି । କେତେ ହସନ୍ତି ସେ । ବାରିରେ ଫୁଲ ଫୁଟିଛି, ଟମାଟୋ ହୋଇଛି, ଚକ୍‌ଚକ କଳା ବାଇଗଣ ହୋଇଛି, ବାପା ଭଲ ପାଆନ୍ତି, କିନ୍ତୁ ସେଦିନ ତରକାରି ଖରାପ ହୋଇଥିଲା, ବୋଉ ବାଇଗଣ ଭାଜିବାକୁ କହିଲାରୁ କହିଲେ 'ନାଇଁ ଥାଉ—ଦରକାର ନାହିଁ ।' ରାଗି କରି କହିଲେ ନାହିଁ, ଖାଲି ସେମିତି କହିଲେ । ବୋଉ ଚୁପ୍ ହୋଇଗଲା ।

ବାପା କାହାନ୍ତି ? ସକାଳୁ କୁଆଡେ ଗଲେଣି । ଅଫିସ କାମ । ଛୁଟିରେ କଣ ଏତେ କାମ ମ ?

ବାପା ନାହାନ୍ତି, ଭଲ ହୋଇଛି । ବାପା ଥିଲେ ସେ ବନ୍ଦୁଦାଦା ଦାଣ୍ଡଘରେ ବସି କେଣ ଏଣ୍ଟେଡ଼ଣ୍ଡ ଗପିବେ । କେଣ ମକ୍ଦ୍ଦମା ଅଫିସ କଥା, ଖବରକାଗଜ କଥା, ହଅ ନାହିଁ ଜହ୍ନ ନାହିଁ । ମୁହିଁକୁ ଏତେ କେଣ ପଦେ ପଦେ କୁଥା,—ସେ କ ଗପ ? ଆମ ହେଡ଼ମାଷ୍ଟରଙ୍କ ଘରେ ମିଟିଂ ହେଲା ପରି । ମୁଁ ଦେଖିଛି, ସେଦିନ ଘଣ୍ଟା ଘଣ୍ଟା କାଗଜ ଖଣ୍ଡେ ଧରି ବସିଥାନ୍ତି । ପିଲାମାନଙ୍କୁ ମନାହୁଏ ଯେ ବୀଟ ଦେଇ ଯିବାକୁ; ପାଟି କରିବାକୁ—କେଣ ନା । ମିଟିଂ ହେଉଛି ।

ବାପା ଥିଲେ ବୋଉ ଖାଲି ଗ୍ଲ' ଜଳଖିଆ ଦେଇ ଚୁଲିଯାଏ । ବାପା ହସନ୍ତି ନାହିଁ, ବନ୍ଦୁଦାଦା ହସନ୍ତି ନାହିଁ, ବୋଉ ହସେ ନାହିଁ । ବାପା ବେଳେବେଳେ ବୋଉକୁ କହନ୍ତି—'ବସୁନା ଏଇଠି' । 'ନାଇଁ ମୋର କେତେ କାମ ପଡ଼ିଛି' କହି ବୋଉ ଚୁଲିଯାଏ ।

ଦିନୁଟାଏ ସେଦିନ ବନ୍ଦୁଦାଦା କଣ ଗୋଟାଏ କହି ନିଜକୁ ନିଜେ ହସିଲେ । ବୋଉ ବି ହସିଲା ତାଙ୍କ ପାଖରେ । ବାପା ଦ' ଜଣଙ୍କୁ ଆଡ଼କୁ ଅନେଇଲେ ଓ କୁନ୍ଥେଇଲା ପରି ହସିଦେଲେ ଟିକଏ । ବାପାଙ୍କର କଣ ହୋଇଛି କେଜାଣି ।

ବାପା ନାହାନ୍ତି, ଭଲ ହୋଇଛି । ଦାଣ୍ଡଘର ଅନ୍ଧାରରେ ମିଟିଂ ହେଉ ନାହିଁ । ବାଉରେ ଖଟରେ ଗପ ହେଉଛି । ବନ୍ଦୁଦାଦା ହସୁଛନ୍ତି । ବୋଉ ହସୁଛି ।

ବୋଉ ଆଜି ଖୁସି ହେବ । ବେଣୀ ଗୁଡ଼ିବ ନାହିଁ । ମୁଣ୍ଡ କୁଣ୍ଡେଇ ଭଲ କରି ଶବନ୍ ବାନ୍ଧିଦେବ । ମଝିରେ ମଝିରେ ହାତ ବନ୍ଦ କରି ବୁଆଡ଼େ ଅନେଇ ରହିବ । ଘଣ୍ଟାଏ ଲାଗିବ ମୁଣ୍ଡବନ୍ଧା ସରିଲା ବେଳକୁ । ବୋହି ଅଳଦେଇ ହୋଇଯିବ ।

ବୋଉ ସକାଳେ ରାଗି କରି କହିଥିଲା ଆଜି ଚୁଡ଼ାଭଜା, କଦଳୀ ଖାଇବାକୁ ହେବ । ଏତେ ଭଲମନ୍ଦ ଖାଇବାକୁ ପଇସା ଅଛି କେଉଁଠି ? କିନ୍ତୁ ଆଜି ବୋଧହୁଏ ଅନ୍ୟ ଜଳଖିଆ ମିଳିବ, ମହନଭୋଗ, ନ ହେଲେ ଆଳୁ ପକୋଡ଼ା । ବନ୍ଦୁଦାଦା ଆସିଛନ୍ତି ।

ଗୀତା ଦାଣ୍ଡପିଣ୍ଡାର ଗୋଟଏ କୋଣକୁ ଲାଗି ଅସିଲା, ସେଠି ବାଉର ଫାଲେ ଦେଖାଯାଏ ।

ବୋଉ ଲଙ୍କାମରଚ ତୋଳୁଛି । ବନୁଦାଦା ଛୁଡା ହୋଇଛନ୍ତି ସେଠି । ହସୁଛନ୍ତି । ବୋଉ ମୁହଁ ଟେକି କଣ କହିଲା । ବନୁଦାଦା ଆହୁରି ହସୁଛନ୍ତି । ବୋଉ ହସି ହସି ପଛକୁ ଫେରିଗଲା ।

ପଛଆଡୁ କାହା ଘରୁ ବତକ ଦ'ଟା କାଁ-କାଁ କରି ଧାଇଁ ଧାଇଁ ଆସୁଛନ୍ତି । ତାଙ୍କ ଅଣ୍ଟା ହଲଦିଆ । ଆଣ୍ଠୁଠିରେ ଜାଲ୍ ବନ୍ଧା ହୋଇଛି । ପଛରେ ଗୋଟାଏ ବୁଢ଼ୀ ଦୌଡ଼ୁଛି ।

ଯୋଡ଼ାଏ ବତକ, ଏକାଠି ପଳାଇ ଆସୁଛନ୍ତି । ଏକାଠି କା-କା କରୁଛନ୍ତି । ଭାଇ-ଭଉଣୀ । ନାଇଁ ବାପା, ବୋଉ । ବାପା—ବୋଉ । ଉହୁଁ ! । ନ ହେଲେ—ବନୁଦାଦା, ବୋଉ ? ନାଇଁ, ନାଇଁ—ଛି

ବୋଉ ମୁହଁରେ ଖରା ପଡ଼ୁଛି । କାନଫୁଲ ଚମକୁଛି । ମୁଣ୍ଡରେ ସିନ୍ଦୂର ଚମକୁଛି । ବୋଉ ହସୁଛି । ଆଉ ବାପା ଏହିକ୍ଷଣି ପାଖରେ ଥିଲେ.... ।

ବାଡ଼ିରେ ବାଇଗଣ ହୋଇଛି । କଳା-ମୁଚୁମୁଚୁ ବାଇଗଣ । ଭାଜିଲେ କେତେ ବଢ଼ିଆ ଲାଗେ । ବୋଉ ପଚାରିଲାରୁ ବାପା ସେଦିନ ମନା କଲେ, କିନ୍ତୁ ବନୁଦାଦାଙ୍କୁ ଭାଜି କରି ଦେଲେ ବନୁଦାଦା ଖୁସି ହେବେ । ବୋଉ ଖୁସି ହେବ । ବୋଉ ତାଙ୍କୁ କଣ ଖାଇବାକୁ ଦେବ ଆଜି ?

ବନୁଦାଦା କଣ କହୁଛନ୍ତି । "ମୁଁ ନିଶ୍ଚୟ ଆସିବି ତମ ଜନ୍ମଦିନରେ,ଆସିବି ନାହିଁ, ଏକଥା ହୋଇପାରେ ?"

ବୋଉ ହସୁଛି, ମୁଣ୍ଡକୁ ହଲଉଛି, । "ଆ-ହା, ସତେ ଯେମିତି ମୁଁ ଡ଼ାକିଲେ ଦୌଡ଼ ପଳାଇଆସ ସବୁଦିନେ ?"

"ନୁହେଁ ?" କହି ବନୁଦାଦା ଅନଉଛନ୍ତି ବୋଉ ଆଡ଼କୁ । ବୋଉ ହସୁଛି ।

ବାପା ଏମିତି କହିପାରନ୍ତି ନାହିଁ, ବାପାଙ୍କର କଣ ହୋଇଛି ? ବାପାଙ୍କର ଦେହ ଖରାପ, ଔଷଧ ଖାଇ ଠିକ୍ କରି ଦେଉ ନାହାନ୍ତି ?

...କୃଷ୍ଣଙ୍କ ଭିତରେ କାର ପାଖିଛି । ଟେଲିଗ୍ରାଫ୍ ତାର ଉପରେ କାଉ ବସିଛନ୍ତି । ଟିକି ପିଲାଟିକୁ ପୋଛିଦେଇ-ପୋଛିଦେଇ ନେଇ ଶୋଇଛି ବୋଉ କୋଳରେ । ବୋଉ ଝୋଳାରୁ ଗୋଟାଏ ବାପାଙ୍କ ମୁହଁରେ ମୁଣ୍ଡାଇଦେଲା । ବାପା ନାହିଁ ନାହିଁ କରି ଅଧେ ଖାଇଲେ ଓ ଅବଶିଷ୍ଟ ଅଧକ ବୋଉ ମୁହଁରେ ଗୁଞ୍ଜିଦେଲେ । ଦୁହେଁ ହସୁଥାନ୍ତି । ଖଜୁରିକୁଳ ଝୁରୁଝୁରୁ ହୋଇ ଚାଲେ ଝିଙ୍କ ହୋଇଗଲାଣି । ବୋଉ ବିରକ୍ତ ହେଲା ପରି କହୁଥାଏ,—ଡ୍ରାଇଭର ସାମନାରେ ଆଇନା ଅଛି ଜାଣିନ ? ଏଇ ଏବକା କଥା । ଆମେ ଯାଉଥିଲୁ ଷ୍ଟେସନକୁ ବନ୍ଦାଦାଙ୍କୁ ଅଣିବାକୁ । ବନ୍ଦାଦା ନୂଆ କରି ଏଠିକି ଆସୁଥାନ୍ତି ସେଦିନ ।

ଯଦି ବନ୍ଦାଦା ନ ଆସି ଥାଆନ୍ତେ ।

ବାବୁଆ ପାଟି କଲାଣି । ରଜୁ ଭେଁ-ଭେଁ ହେଉଛି । ବୋଉ ଏଇକ୍ଷଣି ଚାଲି ଆସିବ । ବନ୍ଦାଦା ଗଲେଇ ଆସିବେ । ବୋଉ ରାଗିବ ।

(ଗୀତା ଦୌଡ଼ିଗଲା ଅନ୍ୟ ପିଲାଙ୍କ ପାଖକୁ । 'ବାବୁଆ ପାଟି କରନା', 'ରଜୁ କାନ୍ଦନା' କହିଲା ବେଳକୁ ବାବୁଆ ଗୀତା ଉପରେ ମୁଷ୍ଟି ପ୍ରହାର ଆରମ୍ଭ କରିଦେଲା । ଗୀତା ତା' ଦି'ହାତ ଧରି ପକିଲା ବେଳକୁ ବୋଉ ଓ ବନ୍ଦାଦା ଆସିଗଲେଣି । ବୋଉ ଅନେଇଛି ତା' ଆଡ଼କୁ କଟମଟ କରି । ବନ୍ଦାଦା ହସୁଛନ୍ତି ।)

'ତୁ କାହିଁକି ମାରିଲୁ ତାକୁ ?

'ବୋଉ, ମୁଁ ମାରି ନାହିଁ । ସେ ରଜୁକୁ ମାରିଲା, ମୁଁ ଛଡ଼େଇ ନେଲି ।'

'ସେ ମିଛ କହୁଛି ବାପା, ସେ ମତେ ମାଇଲା । ରଜୁକୁ ପଚାର ।'

(ରଜୁ ମୁଣ୍ଡ ହଲାଇଲା । ବୋଉ ଗୀତାର କାନ ଧରିଲା ।)

'ବୋଉ, ମୁଁ କିଛି କରି ନାହିଁ । ସେମାନେ ପାଟିକରୁଥିଲେ' ମୁଁ ଛଡ଼େଇ ଦେଲି .ତୁ ରାଗିବୁ ବୋଲି ।'

'ଚୁପ୍, କିଏ ବୋଉକୁ ଦେଖିପାରେ । ଦି' ମିନିଟ୍ ମଣିଷକୁ ଶାନ୍ତିରେ ରଖେଇ ଦେବେ ନାହିଁ.. ଏଇ ଗୀତା ହେଉଛି ସବୁ ନାଟର ଗୋବର୍ଦ୍ଧନ । '

(ଗୀତା ପାଣି ନ କଣ କାନ୍ଦୁଛି । ଟ୍ରେନ୍ ଝଁଝଁର ହୋଇ ଚାଲି ଯାଉଛି । ତାର ଭିତରେ ଅନେଇଛି ବୋଉକୁ ଓ ବନୁଦାଦାକୁ । )

ମୁଁ କିଛି କଣ ନାହିଁ, ବୋଉ ନ ରାଗୁ ବୋଲି ମୁଁ କଜାଆ ଭାଙ୍ଗିବାକୁ ଯାଇଥିଲି । କାଳେ ବୋଉ ପଳେଇ ଆସିବ, ରାଗିବ, ତା' ଖୁସି ଭାଙ୍ଗିଯିବ ବୋଲି ।

ବୋଉ ବୁଝୁ ନାହିଁ ମୋତେ । ବନୁଦାଦା ହସୁଛନ୍ତି । ତାଙ୍କ ହସ ଦେଖି ରାଗ ଆସୁଛି ।

ଟ୍ରେନ୍ ଚାଲି ଯାଉଛି । ମୋଟା ମୋଟା ଚକ । କଳା କଳା ଧୂଆଁ ।
ତା'ର ତଳେ ବନୁଦାଦା ଶୋଇ ଯାଇଛନ୍ତି । ଆଉ ହସିବେ କେତେବେଳେ ?

(ବେଳ ଲଗଲଗ ହେଉଛି । ଗୀତା ସ୍କୁଲରୁ ଫେରୁ ଫେରୁ ମଝିରେ ମଝିରେ ଢିଁ ପାଖକୁ ଦୌଡ଼ିଯାଉଛି, ନଈକର ଟୋକା କୁଳଅଁ ପଛେ ପଛେ ଆସୁଛି ବନ୍ଧୁ-ବାନ୍ଧବ ଧଣ ।)

ଅଜ ନାବ୍ ଦାଦ କହିଲେ—"ଗୀତା ଇଜ୍ ଏ ଗୁଡ୍ ଗାର୍ଲ", ଗୀତା ଇଜ୍ ଏ ଗୁଡ୍ ଗାର୍ଲ । ଅଙ୍କରେ ଦଶରୁ ଦଶ, ଇଂରେଜୀରେ ଦଶରୁ ଆଠ ଓ ଡ୍ରଇଂରେ ଫାଷ୍ଟାମରାଦଦ କହିଲେ, 'ଏମିତିକା ଭଲ କଲେ ତୁ ତ କ୍ଲାସରେ ଫାଷ୍ଟ ହୋଇଯିବୁ !' ସୁମିତ୍ରା ମୋ ଆଡ଼କୁ କଟମଟ କରି ଚାହୁଁଥାଏ । ରାଗୁଥାଏ, ବୋଧହୁଏ ମୁଁ ଫାଷ୍ଟ ପ୍ରାଇଜ୍ ନେଇଯିବି ବୋଲି ।

ବୋଉ ଆଜି କେତେ ଖୁସି ହେବ, ଗେହ୍ଲା କରିବ । ଆଜି ତା' ଜନ୍ମଦିନ । ଖୁସି ହୋଇ ନିଶ୍ଚୟ ପୁରସ୍କାର ଦେବ । ରିବନ, କେକ୍, ନ ହେଲେ ଗୋଟିଏ ପେନ୍‌ସିଲ ।

ଆଜି ବୋଉ ପାଇଁ ପ୍ରେଜେଣ୍ଟ କିଣିଛି, ଟଙ୍କାକର ପ୍ରେଜେଣ୍ଟ । କେତେ ଦିନୁ ଦାଇତ ପାଇତ ଟଙ୍କାଏ କରିଛି । ଏମିତିକା ପ୍ରେଜେଣ୍ଟ କେହି ଆଣି ନଥିବେ, ରଜୁଟା କଣ ଦେବ ? ରବର ଖଣ୍ଡେ, ନ ହେଲେ ଜଣ ଟିକେ ଦେଇ କହିବ, 'ହେଇ ମୋ ପ୍ରେଜେଣ୍ଟ—।' ଦିନକ ପରେ ପୁଣି ମାଗିନେବ; ନ ହେଲେ କାନ୍ଦି ଗଡ଼ିଯିବ । ରଜୁର ବୁଦ୍ଧି ହୋଇ ନାହିଁ ।

ମୋ'ଠୁ ଭଲ ପ୍ରେକେଣ୍ଟ କଣ କେହି ଆଣିଥିବ ? ବାପା କଣ ଆଣିଥିବେ ? ନିଶ୍ଚୟ କିଛି ଭଲ ଜିନିଷ ହୋଇଥିବ । ବୋଉ ବ'କଣଙ୍କର ଜିନିଷ ଥାକରେ ଥୋଇ ସମସ୍ତଙ୍କୁ କହିବ, 'ହେଇ ଦେଖ,ବାପ-ଝିଅଙ୍କର ପ୍ରେଜେଣ୍ଟ ।'

ଆଉ ବନୁଦାଦା ? ସେ ବ' କଣ ଆଣିଥିବେ ? ସେ କାହିଁକି କଣ ଆଣିବେ ? ସେ ବୋଉର କଣ କି ?

ନାଇଁ, ଆଣନ୍ତୁ । କଣ ହେଲା ସେଥିରେ ? ବୋଉ ଖୁସି ହେବ ?
ବୋଉ କଣ ତାଙ୍କ ଜିନିଷ ପାଇ ବେଶି ଖୁସି ହେବ ?

...ଡେଙ୍ଗା ଡେଙ୍ଗା ଡାଳଗଛ । ମୁଣ୍ଡରେ ମେଞ୍ଚାଏ ଠିଆ ଠିଆ ବାଳ । ଦେହଟା ହାଡ଼ ପଶ, ସବୁ ଚମ୍ପଗଲାଣି; ଖାଲି ମୁଣ୍ଡଟା ବାକି ଅଛି । ଇଏ କଣ, —ମୁଣ୍ଡ ଭିତରୁ ନାଲିଆ ଭଙ୍କି ମାରୁଛି । ସିନ୍ଦୁର ଲାଗେଇଛି ? ଉହୁଁ:—ମୁଣ୍ଡ ଫାଟି ରକ୍ତ ବହୁଛି । ନା—ନା—ମୁଣ୍ଡରେ କିଏ ମେଞ୍ଚାଏ ଅବିର ଲଗେଇ ଦେଇଛି । ହୋଲି ଖେଳୁଥିଲା ସେ ।

ଏସ୍. ଡ଼ି. ଓ.ଙ୍କ ବଙ୍ଗଳା ଆସିଲାଣି । ଆଉ ଟିକିଏ ଗଲେ ଆମ ଘର ।

...ନାଙ୍ଗଟା ହଂସକୁଟୀ । ହୁଂଯାରେ ଜଳ ଯାଉଛି । ଅମଙ୍ଗଳିଆ । କାହିଁକି ଦେଖାହେଲା ତା ସାଙ୍ଗରେ ? କାହିଁକି ତାକୁ କହିଲି ପ୍ରେଜେଣ୍ଟ କଥା ? ମୋତେ ଦେଖାଇବାକୁ କହିଲା । ମୁଁ ମନା କଲିରୁ କହୁଛି କଣ ନା ଆମର ଏସବୁ ଚଳେ ନାହିଁ, ବାପା ଚିଡ଼ନ୍ତି, କହନ୍ତି ଫୁଲେଇ ଢଙ୍ଗ । ଛି, ଅମଙ୍ଗୁଳିଆ, ମଫସଲିଆ । ନଜେ ଯେଉଁ ଭଲ ପିଲାଟା ତ ! ସୂର୍ଯ୍ୟମଣି ତା କ୍ଲାସରେ ପଢ଼େ, କହୁଥିଲା ସେ ସେ ମାଡ଼ ଖାଏ ଓ ମାଡ଼ ଖାଇଲେ 'ଭେଁ' ଭେଁ ହୋଇ କାନ୍ଦେ ଭେରଣ୍ଡାଙ୍କ ପରି, ଘରେ ବି' ମାଡ଼ ଖାଉଥିବ, ତା' ବୋଉ କଣ ତାକୁ ମାରୁ ନ ଥିବ ?

ମୋ ବୋଉ କଣ ବେଶି ମାରେ ? ନାଇଁ—ଏବେ ସିନା ଏମିତ ମାରୁଛି, ହେଲେ ମୋ'ଠୁ ସ୍ନାକୁ ବେଶି ମାଡ଼ ଖାଏ'।

ଆଜି ବୋଉ ଜନ୍ମଦିନ । ଆଜି ସେ ଖୁସି ଥିବ । ମୋ ପ୍ରେଜେଣ୍ଟ ପାଇ ଆହୁରି ଖୁସି ହେବ । ଜନ୍ମଦିନରେ ଖୁସି ଥିଲେ ପରା ବର୍ଷକଯାକ ଖୁସି ହୁଅନ୍ତି ! ତାହାହେଲେ ବୋଉ ଆଉ ରାଗିବ ନାହିଁ—ଅକଠୁଁ ..

ଦେଖିଲି,—ଆମ ଘର ଆଉଁଠିଗଲା । ଏଇ ମାଇଲ୍ ଖୁଣ୍ଟ । ତା'ପରେ ହରିବାବୁଙ୍କ, ଘଣ୍ଟି ଉଇ ଘର କରିଛି । ତାପରେ ଫୁଟବଲ ପଡ଼ିଆର କାନ୍ଥ । ନର୍ଗିସ୍ ନାକଂର ବୋଲକ ନାଇଛି । ବୋଉ କହୁଥିଲା ବୁଢ଼ୀମା'ର ସେମିତି ବୋଲକ ଥିଲା । ତା'ପରେ—ତା'ପରେ ଆମ ଘର ।

ଘରେ ଆଲୁଅ ଲଗିଲାଣି । ଦାଣ୍ଡରେ କେହି ନାହାନ୍ତି । ବୋଉ ବୋଧହୁଏ ଘରେ ଅଛି । ବାପା ଅଫିସରୁ ଫେରି ନ ଥିବେ । ରାଜୁ, ବଜୁ କଣ କରୁଛନ୍ତି,— —ବୁଲି ଯାଇଛନ୍ତି ? ତାଙ୍କର ମଜା । ଆଉ ବର୍ଷେ ସ୍କୁଲକୁ ଗଲେ ରାଜୁର ମଜା ଗୁଲିଯିବ ଯେ !

ଅନ୍ଧାର ଅସିଲଣି । ସିନେମା ଛବି ବାଣ ହେଉନାହିଁ । ପଡ଼ିଆ କାନ୍ଥ ପାଖକୁ ଛୋଟିଆ ପାଣି ଧାରଟିଏ । କଳା କଳା ଦିଶୁଛି । ପାଖକୁ ଯିବ ? ନାହିଁ,— ତା ଭିତରେ ସେ ଦିନ ଥିଲା ଗୋଟାଏ କଳା ପୋକ । ପୋକ ଥିବ ଏବେ ବି,— ଅନ୍ଧାର ଭିତରେ ବସିଥିବ । ଚୁପ୍ ଚାପ୍ ହୋଇ ଘାସଫୁଲ ମଝିରେ । ବୁଢ଼ୀ ଅସୁରୁଣୀ । ଅନ୍ଧାର ଜଙ୍ଗଲ ଭିତରେ ବସିଛି ଏକୁଟିଆ, ପାଖକୁ ଆସିଲେ ଟାଆଁକୁ କିନା ଗିଳିଦେବ ।

ଶୀତ ଲାଗୁଛି, ହାତରେ କଣ ଟିକିଏ ଟିକିଏ ଫୁଲି ଉଠୁଛି । ଘେମ୍ ଟାଙ୍କୁଣ ଉଠୁଛି ? ଡ଼ର ଲାଗଲେ ପରା ଘେମ ଟାଙ୍କୁଣ ଉଠେ ।

ପ୍ରେଜେଣ୍ଟ କାହିଁ ? ପ୍ରେଜେଣ୍ଟ ହାତରେ ଅଛି ନା ? ଗୀତା ମୁଠାଇ ଧରିଲା ହାତରେ ଥିବା କାଗଜ ପୁଡ଼ିଆଟିକୁ । ତା'ର ଚାଲି ଧୀର ହୋଇ ଆସିଲା ଘର ଫାଟକ ପାଖରେ ପହଞ୍ଚିଲା ବେଳକୁ ।

ଘରେ ଆଲୁଅ ଜଳୁଛି । ବାହାର ଅନ୍ଧାର, କେହି ନାହାନ୍ତି । ଫୁଲ ସବୁ ଶୋଇ ପଡ଼ିଲେଣି ।

ପୁଷ୍ପା କବାଟ ଖୋଲି ଦେଲାଣି । ବୋଉ କାହିଁ ? ମା' ଯାଇଛନ୍ତି ମିଶ୍ର ବାବୁଙ୍କ ଘରକୁ । ପିଲାଏ ଖେଳିବାକୁ ଯାଇଛନ୍ତି । ବାବୁ କଚେଶରୁ ଫେରି ନାହାନ୍ତି ।

ବୋଉ ନାହିଁ, କେହି ନାହାନ୍ତି । ବୋଉର କଣ ମନେ ନାହିଁ ଆଜି ତାର ଜନ୍ମଦିନ ବୋଲି ?

ନାହିଁ, ବୋଉ ଏକ୍ଷଣି ଫେରି ଆସିବ । ମୁଁ ତାକୁ କହିବି ମୁଁ କ୍ଲାସରେ ଫାଷ୍ଟ ହୋଇଛି ବୋଲି । ସେ ଆସିବା ଆଗରୁ ମୁଁ ମୋ ପ୍ରେଜେଣ୍ଟ ସଜାଡ଼ି ରଖିବି ମଝିଘରେ, ଆଲୁଅ ତଳେ । ବୋଉ ଖୁସି ହେବ । କେହି ନାହାନ୍ତି, ଭଲ ହୋଇଛି, ଆଗେ ତାକୁ ଦାଣ୍ଡ ଘରକୁ ନେଇ ଯାଏ, ସେଇଠି ଖୋଲି, ଠିକ୍‌ଠାକ୍ କରି ମଝିଘରକୁ ନେଇଯିବି ।

( ଦାଣ୍ଡଘରକୁ ଯିବା ବାଟରେ ଗୀତା ଠିଆ ହୋଇଗଲା ବାରପଟ କବାଟ ପାଖରେ । କବାଟ ମେଲା ହୋଇଛି । )

ଗୃହଆଡ଼େ ଅନ୍ଧାର । ଗଛ ପାଖରେ ବେଶି ଅନ୍ଧାର । ଅନ୍ଧାରରେ କଥା ଶୁଭୁଛି । କଥା ନୁହେଁ—ପବନ, ପବନରେ ଗଛ କଥା କହୁଛି । କେତେ ଦୂରରେ କାହା ଘରେ ଆଲୁଅ ଜଳୁଛି । ଚୌଧୁରୀଙ୍କର ଦୁଇ ମହଲା କୋଠାଘର ଉପର ମହଲାରେ ଆଲୁଅ ଜଳୁଛି । ଆଲୁଅ ପବନରେ ଥରୁ ନାହିଁ କାହିଁକି ?

ଦାଣ୍ଡଘରେ ଆଲୁଅ ଜଳୁଛି । କାନ୍ଥରେ ଫଟୋ ଟଙ୍ଗା ହୋଇଛି—ବୋଉ ମଡେ କୋଳରେ ଧରି ଛିଡ଼ା ହୋଇଛି । ବୋଉ ହସୁ ନାହିଁ ।

ପବନରେ ଅନ୍ଧାର ଥରୁଛି, କଥା କହୁଛି; କିନ୍ତୁ ଆଲୁଅରେ କିଛି ହେଉ ନାହିଁ । ବୋଉ ଆଲୁଅରେ ରହିଛି ଏକୁଟିଆ, ଝୁଣ୍ଟାପରି । ସେଠିକି ପବନ ଯାଉ ନାହିଁ । ପବନ ସେଠିକି ଆସନ୍ତା । ମୁଣ୍ଡବାଳ ଫୁରୁଫୁରୁ ହୋଇ ଉଡ଼ି ଉଠନ୍ତା । ବୋଉର ଓଠ ଥରି ଉଠନ୍ତା । ବୋଉ ହସନ୍ତା, କଥା କହନ୍ତା, ରାଗନ୍ତା— ।

ବୋଉ ଯଦି ସତରେ ଏଇ ଫଟୋ ଭଳିଆ ହୋଇଯାଏ, ରାଗିବା ବି ବନ୍ଦ କରିଦେବ ।

ହେଜ—ସେ କଣରେ ପୋଲିଆଁ ଲଗନ୍ ପଡ଼ିଆ ଉପରେ ଜହ୍ନ । ଫାଳେ କଟି ଯାଇଛି । ଛୁରୀରେ କଟା ହେଲା ପରି ନୁହେଁ, କଏ ଛିଣ୍ଡେଇ ନେଲା ପରି । ତା'ପୃଷ୍ଠ ପାଖପାଖ ଗୋଲ ହୋଇ ପାଉଁଶିଆ ଆଲୁଅ କୁହୁଡ଼ି ।

ଜହ୍ନମାମୁଁ । ତାକୁ ମାମୁଁ କାହିଁକି କହନ୍ତି ? ବୋଉର ଭାଇ, ବୋଉର ସ୍ବର ଭାଇ,ଭଉଣୀ ପାଞ୍ଚ । ସତରେ ମାମୁଁ ? ମାମୁଁ ମୁହଁ ଗୋଲ,ମାମୁଁ ମୁହଁ ଗୋରା । ବୋଉ ମୁହଁ ଗୋଲ, ଗୋରା ମାମୁଁ ହସୁଛି,—ନାହିଁ ତ । ଏକୁଟିଆ ମୁହଁକୁ

ଶୁଖେଇ ବସିଛି । ପାଖରେ ତାଙ୍କୁଟିଏ ନାହିଁ । କେହୁ ନାହିଁ । ଏକୁଟିଆ । ବୋଉ ଭଲଆ ।

( କିଛି ସମୟ ପରେ । ଗୀତା ଦାଣ୍ଡଘରେ । ତାର ଆଲମାରିର ଖେଳଣା ସଜାଉଛି । )

ବରକନ୍ୟା ମଝିରେ, 'ଘ' ପାଖରେ ବାଜାବାଲା । କନ୍ୟା ପାଙ୍ଗରେ ଯାଉଛି ଖଟ, ଆଲମାରି, ଟେବୁଲ, ସୋଫା ସେଟ୍ । ଆଉ ସିଲେଇ ମେସିନ୍, ରେଡ଼ିଓ ? ଏଥରକ ବଜାରକୁ ଗଲେ କହିବ ବୋଉକୁ କିଣିଦେବ ।

ଥାକ ଉପରୁ ମହାଦେବ ଅନେଇଛନ୍ତି । ଗୋଟାଏ ଗୋଡ଼ ଉଠିଛି ବଙ୍କା ହୋଇ । ହାତରେ ଡମ୍ବରୁ । "ବମ୍ ବମ୍ ବାଜେ ଡ଼ମ୍ବରୁ ..ବାଜେ ଡ଼ମ୍ବରୁ ।"

ବୋଉର ଏଇ ପ୍ରେଜେଣ୍ଟ,—ସେ କେଉଁଠି ରଖିବ ? ଦାଣ୍ଡଘର ଖେଳଣା ଥାକରେ, ମଝିଘର ଥାକରେ, ନା ଶୋଇବାଘର ଆଇନା ଟେବୁଲ ଉପରେ ? ବୋଉ ପୁଣି ମତେ କଣ ଫେରାଇଦେବ । ମୋ ବରକନ୍ୟା ତାକୁ ପାଇ ଭାରି ଖୁସି ହୁଅନ୍ତେ, ନାଁ ଥାଉ । ସେ ବୋଉର,ବୋଉ ତାକୁ ନେଇ ଯାହା କରିବ ।

ଯାଉଛି ଖୋଲିବ ତାକୁ । ଏକ, ଦୁଇ, ତିନି..କାଗଜରେ ବନ୍ଧା ହୋଇ ଅଚିନା ଦେଖା ଯାଉଛି । ମୁଁ ଗୋଟାଏ ସୁନ୍ଦରିଆ ଖୋଲ ମାଗିଲି ସେ,ଦେଲା ନାହିଁ ।

ପ୍ରେଜେଣ୍ଟ । ପଦ୍ମଫୁଲ । ଚକ୍ ଚକ୍ ଧଳା ଶାମୁକା, ଖଞ୍ଜା ହୋଇଛି ଗୋଟିକ ଗୋଟି ଫୁଲର ପାଖୁଡ଼ା, ପାଖୁଡ଼ା ଅଗରେ ସରୁ ସୁନେଲି ଗାର । ଫୁଲ ମଝିରେ କଣ ରୁଆ ରୁଆ ହୋଇ ଗୁନ୍ଥା ହୋଇଛି । ହଳଦିଆ ହୋଇ । ଫୁଲର କେଶର ।

ଦୋକାନବାଲା କହୁଥିଲା ବେଶି ଟଙ୍କା ଥିଲେ ଅଦ୍ଭୁତ ସୁନ୍ଦର ଫୁଲ ମିଳିଥାନ୍ତା, ସୁନା ରୂପା ଲଗା ହୋଇ । ହଉ ଏଇ କଣ ସୁନ୍ଦର ହୋଇ ନାହିଁ ?

ଏହାକୁ ନେଇଯାଉଛି ଥାକ ଉପରକୁ । ମହାଦେବଙ୍କ ପାଖକୁ । ସବୁ ଆଲୁଅ ଲିଭେଇ ଦେବ । ଖାଲି କାଚର ସେଇ ଧଳା ଆଲୁଅଟି ଜଳୁଥିବ,—ଠିକ୍ ମହାଦେବଙ୍କ ଦେହରେ ଓ ମୋ ପଦ୍ମଫୁଲ ଉପରେ ।

...ଭଲ ହେଉନ ? ନିଷ୍ଟୟ ଭଲ ହେଉଛ,ବଢିଆ ହେଉଛ । କଣ କହୁଛ, ମିଷ୍ଟର ମହାଦେବ ? ବୋଉ ନିଷ୍ଚୟ ଖୁସି ହେବ,—ନୁହେଁ ?

ଯାଉଛ ଯ୍ହାକୁ ମନ୍ଦିଘରକୁ ନେଇଯାଏ । ବୋଉ ସେଇଠିକୁ ଆସିବ ଆଗେ । ତା' ଆଖିରେ ପଡ଼ିବ ।

('ପ୍ରେଜେଣ୍ଟ'କୁ ହାତରେ ଧରି ଗୀତା ଧୀରେ ପାଦରେ ମନ୍ଦିଘର ଆଡ଼କୁ ମୁହାଁଇଲା । ଘର ଦୁଆରବନ୍ଧରେ ପହଞ୍ଚି ଅନ୍ଧାରରେ ଅନ୍ଦାଜ ଅନ୍ଦାଜ ଆଲୁଅ ସୁଇଚ୍ ଟିପି ଦେଲା ।)

ଘର ସାରା ଆଲୁଅ । ବନ୍ଧଣା ହୋଇ ନାହିଁ । ପିଲାଙ୍କ ଧୂଆ ଜାମାପଟା ଗଦା ହୋଇ ପଡ଼ିଛି ସେମିତି । ବୋଉ ଆସିଲେ ଚଢ଼ିବ କୁଳିଆ ଉପରେ ।

ଏ, ଇଏ କଣ ? କାନ୍ଥକଣରେ ଥିବା କୋଣିଆ କାଠ ପଟା ଉପରେ ନୂଆ ଜିନିଷଟାଏ ଥୁଆ ହୋଇଛି । ଚକ୍ ଚକ୍ ଧଳା । ଧଳା ପଥର ନା ରୂପା ? ସବୁଯାକ ଆଲୁଅ ପଡ଼ୁଛି ତା ଉପରେ । କେତେ ବଡ଼, କେତେ ସୁନ୍ଦର ! କିଏ ଆଣିଲା ଯ୍ହାକୁ ? ହାତ ପାଇବ ନାହିଁ । ଖଟବାଡ଼ରେ ଚଢ଼ି ଦେଖିବ ।

(ତା ପ୍ରେଜେଣ୍ଟକୁ ଝରକା ଉପରେ ଥୋଇ ଗୀତା ଖଟବାଡ଼ ଉପରେ ଚଢ଼ିଲା ନୂଆ ଜିନିଷଟିକୁ ଦେଖିବା ପାଇଁ ।)

ପାଖରେ ଆହୁରି ସୁନ୍ଦର ଦେଖା ଯାଉଛି । ଆହୁରି ବଡ଼ ଧଳା, କଣ ଇଏ ? କୋଠା ନା ଦେଉଳ ? ନା—ନା—ଇଏ ହେଉଛି ତାଜମହଲ । ଆମ ଇତିହାସ ବହିରେ ଛବି ଅଛି । ଧଳା ମାର୍ବଲ ପଥରରେ ତିଆରି । ଆଗ୍ରାରେ ଅଛି । କିଏ ତିଆରି କରିଥିଲେ କି— ?

ଏ ବି' କଣ ମାର୍ବଲ ପଥର ? ହଁ ତ—ହାତକୁ ଚକ୍‌କଣ ଲାଗୁଛି । ଥଣ୍ଡା ଲାଗୁଛି । କେତେ ଟଙ୍କା ହେଇଥିବ— ?

ତା ତଳେ ଖଣ୍ଡେ କାଗଜ ରଖା ହୋଇଛି । କଣ ଲେଖା ହୋଇଛି ଶାଳୁଆ କାଳିରେ ।

'ନୂଆବୋଉଙ୍କୁ ଜନ୍ମ ଦିନରେ—ବିନୁ' । ବିନୁ ଦାଦା ଦେଇଛନ୍ତି ? ବୋଉ ପାଇଁ ପ୍ରେଜେଣ୍ଟ ?

ପଛଆଡେ କୁଳିଆ ଆସିଲଣି । 'ଗୀତା ଦେଇ, ସେଥିରେ ଲଗିନାହିଁ । ଏଇ ଟିକିକ ଆଗରୁ ବନୁବାବୁ ଆସିଥିଲେ, ରଖି ଦେଇ ଯାଇଛନ୍ତି । ମାଆ ଦେଖି ନାହାନ୍ତି ।'

'ହଉ ହେଲ ଯା, ମୁଁ ଜାଣେ । ତୁ ଗଲୁ ଏଠୁ ।'

ବନୁଦାଦା ପ୍ରେଜେଣ୍ଟ ଦେଇଛନ୍ତି । ବଢ଼ିଆ ଜିନଷ । ଦାମିକା ଜିନଷ । ବୋଉ ଖୁସି ହେବ । ଭଲ ଜିନଷ ବୋଲି, ବନୁଦାଦା ଦେଇଛନ୍ତି ବୋଲି ।

ମୋ ଜିନଷ ଥୁଆହୋଇଛି ଝରକା ଉପରେ ଝରକା ଅନ୍ଧାରିଆ କଣରେ । ଧଳା ଦିଶୁ ନାହିଁ, ଚକ୍‌ଚିକ୍ ଦିଶୁ ନାହିଁ । ଅପରଛନିଆ ଦିଶୁଛି ।

ବୋଉକୁ ଦେବି ନାହିଁ ମୋ ପ୍ରେଜେଣ୍ଟ ? ଦେଲେ ଲଭ କଣ ? କାହିଁ ତାଜମହଲ, ଆଉ କାହିଁ ମୋ ଶାମୁକା ! ବୋଉ ରଖିଦେବ କୋଉ କଣରେ, ପଚାରିବ ନାହିଁ । କେହି ପଚାରିବେ ନାହିଁ । ବନୁଦାଦାଙ୍କ ଜିନଷକୁ ଖର୍ଚ୍ଚି ଦେଲେ, ଫୋପାଡ଼ି ଦେଲେ—?

ନାଇଁ—ନାଇଁ, ପ୍ରେଜେଣ୍ଟ ଭଲ ସୁନ୍ଦର ! ଏ ହେଉଛି ବଡ଼ମାନଙ୍କର ପ୍ରେଜେଣ୍ଟ, ମୋର ହେଉଛି ପିଲାମାନଙ୍କର ପ୍ରେଜେଣ୍ଟ । ବୋଉ ବନୁଦାଦାଙ୍କର ଜିନଷ ପାଇ ଖୁସି ହେବ, ମୋର ପାଇ ବି ଖୁସି ହେବ ।

ଏ ଜିନଷ କଣ ଏଇଠି ଥିବ ? ନା, ଦାଣ୍ଡଘରକୁ ନେଇଯିବ ? ଚୌଧୁରୀଙ୍କ ଘର ମହଣରୁ ଯାଇଥିଲେ । ତାଙ୍କ ଆଣିଥିବା ଜିନଷ ଦାଣ୍ଡଘରେ ଅଛି । ନନ୍ଦଭାଇ ବମ୍ବେରୁ କେତେ ଜିନଷ ଆଣିଥିଲେ,—ସେ ବି ସେଇଠି ଅଛି । ବନୁଦାଦାଙ୍କ ଜିନଷ ସେଇଠି ହେବ, ଭଲ ହେବ ।

ଏଠି ରଖିଥିବ ମୋ ଜିନଷ । ବୋଉ ଆଖି ଆଗ ପଡ଼ିବ ଏଠି ।

(ଗୀତା ତାଜମହଲର ମୂର୍ତ୍ତିଟିକୁ ଆସ୍ତେ ଉଠାଇ ଗୋଟାଏ ହାତରେ କୁଣ୍ଡାଇ ଧରି ଓହ୍ଲାଇବାକୁ ଚେଷ୍ଟା କଲା । )

ଆରେ ନାଇଁ—ନାଇଁ ...ଓଃ....'ଧଡ଼ାସ୍'···

(ତାଜମହଲ ତଳେ ପଡ଼ି ଚୂନା ହୋଇ ଯାଇଛି । ଗୀତା ପାଖରେ ଛିଡ଼ା ହୋଇ ଅନେଇ ରହିଛି ତାକୁ । ଆଖିରେ ଡର, ସବୁ ସରିଗଲାର ଭାବ)

ଇସ୍ସ୍ କଣ ହେଲା ? କାହିଁକି ହେଲା :

ବୋଉର ଜନ୍ମଦିନର ପ୍ରେଜେଣ୍ଟ୍ ଖର୍ଚ୍ଚ ହୋଇଛି । ବନୁଦାଦାଙ୍କର ଦିଆ ପ୍ରେଜେଣ୍ଟ ଖର୍ଚ୍ଚ ଯାଇଛି । ବୋଉର ଏବୁ ଶରଧା ଖର୍ଚ୍ଚିଯିବ ।

ବୋଉ ରାଗିବ । ବୋଉ ତ ସବୁଦିନେ ରାଗେ, କିନ୍ତୁ ଆଜି ଅଧିକ ରାଗିବ । ବନୁଦାଦାଙ୍କର ଜିନିଷ ଖର୍ଚ୍ଚି ହୋଇଛି । ସବୁ ଜନ୍ମଦିନର ସଉକ୍ ଭୁଲିଯିବ ।

ଆଜି ମୁଁ ବୋଉ ପାଇଁ ପ୍ରେଜେଣ୍ଟ ଆଣିଥିଲି । ସେ ସେଇଠି ପଡ଼ିରହିଛି ଝରକା ଉପରେ । ତାକୁ ବି ଖର୍ଚ୍ଚି ଦେବ ଯାଉଛି ।

ନାଇଁ—ନାଇଁ, ମୁଁ ତାକୁ ଖର୍ଚ୍ଚି ନାହିଁ । ମୁଁ ଜାଣିଶୁଣି ଖର୍ଚ୍ଚି ନାହିଁ । ମୁଁ ଚାହୁଁ ନ ଥିଲି ବନୁଦାଦାଙ୍କର ଜିନିଷ ଖର୍ଚ୍ଚିଯାଉ ବୋଲି । ବନୁଦାଦାଙ୍କର ଜିନିଷ ପାଇଲେ ବୋଉ ବେଶି ଖୁସି ହେବ । ମୁଁ ତାକୁ ଦାଣ୍ଡଘରେ ରଖିବାକୁ ଯାଉଥିଲି ।

ବୋଉ କଣ ବୁଝିବ ? ଦାଣ୍ଡଘରକୁ ନେଇ ଯାଉଥିଲି କାହିଁକି ? ମୋ ଜିନିଷକୁ ଏଠି ରଖୁଥିଲି କାହିଁକି ?

ନାଇଁ—ମୁଁ ଜାଣିଶୁଣି କିଛି କରିନାହିଁ । ମୁଁ ବନୁଦାଦାଙ୍କ ଜିନିଷ ଖର୍ଚ୍ଚି ନାହିଁ । ବୋଉ ମତେ ଭଲପାଏ । ବୋଉ ବୁଝିବ ।

କିନ୍ତୁ ବନୁଦାଦାଙ୍କ ଜିନିଷ ଖର୍ଚ୍ଚି ଯାଇଛି । ଷର ଜିନିଷ ନୁହେଁ । ବାପାଙ୍କ ଜିନିଷ ନୁହେଁ । ବୋଉ ଖାଲି ରାଗିବ ନାହିଁ । ବୋଉ ବ୍ୟସ୍ତ ହେବ ।

ମୁଁ କାହିଁକି ଏଠୁ ନେଇଯାଉଥିଲି ତାକୁ ? ବୋଉ ମୋ ଜିନିଷ ଆଗେ ଦେଖିବ ବୋଲି ? କାହିଁକି ଏମିତ କଲି । ବନୁଦାଦାଙ୍କର ଜିନିଷ ମୋ'ଠାରୁ ଭଲ, ସୁନ୍ଦର । ବୋଉ ପାଇଁ ବନୁଦାଦାଙ୍କର ଜିନିଷ ମୋ'ଠାରୁ ଭଲ, ସୁନ୍ଦର ।

ଏଇକ୍ଷଣି ସେମାନେ ଆସିବେ । ବୋଉ ଫେରିବ । ବନୁଦାଦା ଆସିବେ । ମୁହଁରେ ମୁରୁକି ହସ । ବାପା ଆସିବେ; କିନ୍ତୁ ତାଙ୍କ ଆସିବାରେ କଅଣ ଅଛି ?

ମୁଁ କାହିଁକି ଏମିତ କଲି ? ...

(ମୁହଁରେ ହାତ ଦେଇ ଗୀତା ଖଟ ଉପରେ ବସି ପଡ଼ିଲା । ଅନର୍ଗଳ ଲୁହ ହାତ ପାପୁଲି ଭିଜାଇ ଦେଲା । କିଛି ସମୟ ପରେ । )

ଯୋତା ମଚ୍‌ମଚ୍‌ ଶୁଭୁଛି । କିଏ ଆସିଲା ? ବନୁଦାଦା ନୁହେଁ । ବାପାଙ୍କ ବୁଟ ।

(ଗୀତାର ବାପା ଘର ଭିତରକୁ ପଶିଯାଇ ଦେଖିଲେ ଏ ଦୃଶ୍ୟ । ମୁହଁରେ କ୍ଲାନ୍ତି ଓ ବ୍ୟସ୍ତତା ସବୁଦିନ ପରି । )

'ଇଦ୍ଧେ କଣ ପଢ଼ୁଛି ?'

(ଉତ୍ତର ନାହିଁ)

'ଇଦ୍ଧେ କଣ ଖର୍ଚ୍ଚି ଯାଉଛି, ପଢ଼ୁଛୁ ପରା ?'

'ପ୍ରେଜେଣ୍ଟ,—ବନୁଦାଦା ଆଣିଥିଲେ ବୋଉ ପାଇଁ ।' ବାପା ଚୁପ୍‌ ହୋଇଗଲେ । । କଣ ଭାବୁଛନ୍ତି । ବାପା ଫେର ଯାଉଛନ୍ତି । କିଛି କହୁନାହାନ୍ତି କାହିଁକି ?

(କାନ୍ଦ ଭିତରେ ବି ଗୀତାର ମୁହଁ ଟିକିଏ ଉଜ୍ଜ୍ୱଳ ହୋଇ ଆସିଲା । କଣ ଗୋଟିଏ ନୂଆ ଆଶା ପାଇଲା ପରି ।

ବାପା ଫେର ଯାଉଛନ୍ତି । ପଚାରିବ ? ପଚାରିବ ?

'ବାପା, ବାପା—'

'କଅଣ ?'

(ଗୀତା ଦୌଡ଼ିଗଲା ତା ବାପାଙ୍କ ପାଖକୁ)

'ବାପା,—ବୋଉ ପାଇଁ ପ୍ରେଜେଣ୍ଟ ଆଣିଛ ?'



# ନବ ଦିଗନ୍ତ

ଶ୍ରୀମତୀ ନନ୍ଦିନୀ ଶତପଥୀ

---

"ବୋଉ, ବୋଉ, ବୋଉ ଲୋ !"

ଡାକ ଶୁଣି ମଣିକାଞ୍ଚନ ହାଣ୍ଡିଶାଳ ଭିତରୁ ଲୁଗାକାନିରେ ହାତ ପୋଛୁ ପୋଛୁ ବାହାରି ଆସିଲେ । ଦୁଆରେ ମୁହଁରେ ଠିଆ ହୋଇ ପଚାରିଲେ "କଣ କିରେ ଶ୍ରୀକାନ୍ତ, କାହିଁକି ଡାକୁଚୁ ?"

ଶ୍ରୀକାନ୍ତ ଆଉ ମଣିକାଞ୍ଚନଙ୍କ ମଝିରେ ଅଗଣା । ଦ୍ୱିପ୍ରହର ଖରା ସେଠି ବିଚ୍ଛୁଡ଼ି ହୋଇ ପଡ଼ିଛି । ଅଗଣାରେ ଦଉଡ଼ି ଟଣା ହୋଇ ଲୁଗା ଶୁଖୁଛି । ଚୁଲି ଧାରରୁ ବାହାରି ଆସି ମଣିକାଞ୍ଚନଙ୍କ ଆଖି ଝାପ୍‌ସା ହୋଇଯାଇଛି—କିଛି ଦେଖା ଯାଉନି ।

ଶ୍ରୀକାନ୍ତ ଅଗଣା ପାର ହୋଇ ବୋଉ ପାଖକୁ ଆସୁଛି । ତାର ଚାଲିବାର ଭଙ୍ଗୀ କୌଡ଼ିଲ ପରି । ଏବେ ବଡ଼ଟିଏ ହେଲାଣି ତଥାପି ତାର ସେ ପିଲାଳିଆ ଢଙ୍ଗ ଯାଇନାହିଁ । କଣଟିଏ ଆଣିଲେ କି ପାଇଲେ ପିଲାଦିନେ ସେ ଯେମିତି ଚିତ୍କାର କରି ବୋଉକୁ ଡାକ ପକାଉଥିଲା, "ବୋଉଲୋ ଦେଖିଲୁ କଣ ଆସିଛି ?" ଆଜି ବି ସେମିତି ସେ ପାଟିକରି ଉଠେ । ପଚିଶ ବର୍ଷର ଯୁବକ ଶ୍ରୀକାନ୍ତ ଆଉ ସାତ ବର୍ଷର ବାଳକ ଶ୍ରୀକାନ୍ତ ଭିତରେ କୌଣସି ପରିବର୍ତ୍ତନ ଯେପରି ଦେଖି ପାରନ୍ତି ନାହିଁ ଜନନୀ ମଣିକାଞ୍ଚନ ।

"ବୋଉ, ଦେଖ୍ ଏଇଟା କଣ ?" ଲଫାପା ଭିତରୁ କାଗଜ ଖଣ୍ଡେ ବୋଉ ହାତକୁ ବଢ଼ାଇ ଦେଲା ଶ୍ରୀକାନ୍ତ ।

---

ଗାଳ୍ପିକ : ( ୧୯୩୦ — ) ସ୍ୱାଧୀନୋତ୍ତର ଓଡ଼ିଆ ଗଳ୍ପ ସାହିତ୍ୟ କ୍ଷେତ୍ରରେ ଜଣେ ସୁପରିଚିତା ଲେଖିକା—ବାସ୍ତବବାଦୀ ଚିନ୍ତାଧାରା ଦ୍ୱାରା ତାଙ୍କର ଗଳ୍ପଗୁଡ଼ିକ ପରିପୁଷ୍ଟ । ତାଙ୍କର ବହୁ ଗଳ୍ପ ଅନ୍ୟାନ୍ୟ ଭାଷାରେ ଅନୂଦିତ । ପ୍ରକାଶିତ କୃତି—'କେତୋଟି କଥା'

ମୁହୂର୍ତ୍ତିକ ପାଇଁ ଏକ ଅଜଣା ଆଶଙ୍କାରେ କମ୍ପି ଉଠିଲା ମଣିକାଞ୍ଚନଙ୍କର ଦେହ । ସେ ହାତ ବଢ଼େଇଦେଲେ, କିନ୍ତୁ ଚିଠିଟା ପଢ଼ିଲେ ନାହିଁ । ପୁଅର ମୁହଁକୁ ସେ ଏକ ଦୃଷ୍ଟିରେ ଚାହିଁ ରହିଥିଲେ, ପଲକ ପଡ଼ୁ ନାହିଁ ଆଖିରେ ।

ହସେଇ ଦେଲା ବେଜନୁ ଶ୍ରୀକାନ୍ତ । "କଣ ଏମିତି ବୋକାଙ୍କ ପରି ଚାହିଁଛୁ ? ବସନ୍ତର ଚିଠି ଆସିଛି—ସେ ଫିରୋଜପୁରରେ ଅଛି ।"

ମଣିକାଞ୍ଚନ ଯେପରି କିଛି ବୁଝିପାରୁ ନାହାନ୍ତି । ଫିରୋଜପୁରରୁ ବସନ୍ତର ଖବର ଆସିଛି—ସେ ଖବର ଆଉ କଣ ହୋଇପାରେ ? କିନ୍ତୁ ଏ କଣ କହୁଛି ଶ୍ରୀକାନ୍ତ ?

"ବସନ୍ତ ଅଛି ?" ଏକ ଅବିଶ୍ୱାସ ମିଶା ସ୍ୱରରେ ଯେପରି ନିଜକୁ ନିଜେ ପଚାରୁଛନ୍ତି ମଣି ।

ଶ୍ରୀକାନ୍ତ ବୋଉର କଥାରେ ବିରକ୍ତ ହୋଇପଡ଼ୁଛି । ଚିଠିଟା ଏକପ୍ରକାର ତାଙ୍କ ହାତରେ ଜବରଦସ୍ତ ଗୁଞ୍ଜି ଦେଇ କହୁଛି—"ତୁ ଏମିତି କଣ କହୁଛୁ, ବୋଉ ? ବସନ୍ତ ନିଜେ ଚିଠି ଲେଖିଛି ତୋ ପାଖକୁ । ନେ, ପଢ଼ି ଦେଖ ।"

ଲୁଗା କାନିରେ ଜାକ୍‌ଜାକ୍‌ଆ ଆଖି ଦିଟା ପୋଛି ଦେଲେ ମଣିକାଞ୍ଚନ । ଜୀବନ ସାରା ତ ସେ ଏମିତି ଖାଲି ଆଖି ପୋଛୁଛନ୍ତି ଥରକୁ ଥର; କିନ୍ତୁ ଦୁଅରବନ୍ଧକୁ ଧରି ଦମ୍ଭ ହୋଇ ଠିଆ ହୋଇଛନ୍ତି—ଲୁହର ବନ୍ୟାରେ ଭସି ଯାଇନାହାନ୍ତି କେବେ ।

"ମୋ ପାଖରେ ଚଷମା ନାହିଁ—ତୁ ପଢ଼ି ଦେ ଚିଠିଟା ।" ମଣିକାଞ୍ଚନଙ୍କ ସ୍ୱର ବଦଳିଯାଉଛି ।

"ଆଚ୍ଛା ଶୁଣ ।" ଶ୍ରୀକାନ୍ତ ଚିଠି ପଢ଼ିବାକୁ ଆରମ୍ଭ କଲା—

"ବୋଉ ଲୋ, ଯୁଦ୍ଧକ୍ଷେତ୍ରରୁ ତୋ ପାଖକୁ ଚିଠି ଲେଖୁଛି । ପିଲାଦିନଯାକ ତୁ ମତେ ବାପାଙ୍କ କଥା ଶୁଣେଇଚୁ । ବାପାଙ୍କର ଆଦର୍ଶରେ ଜୀବନକୁ ଗଢ଼ିବା—ଏଇଆ ଖାଲି ବାପାଙ୍କର ଇଚ୍ଛା ନ ଥିଲା, ତୋର ବି ଇଚ୍ଛା ବୋଲି ମୋ ମନରେ ଧାରଣା ହୋଇଥିଲା । ତୁ ତ ଜୀବନର ଆରମ୍ଭରୁ ଯୁଦ୍ଧ କରୁଛୁ-ଅଭାବ ଅନାଟନ ସାଙ୍ଗରେ, ଦୁଃଖ ସାଙ୍ଗରେ । ପୁଣି ଆମକୁ ମଣିଷ କରି ଠିଆ କରିବାପାଇଁ

ବାରୁ କମ୍ ସଂଗ୍ରାମ କରନ୍ତୁନି । ସେଥିପାଇଁ ଆଜିର ଏ ମୁକ୍ତିକୁ ମୋତେ ପଠେଇ ଦେଇ ବାରୁ ଯେ ଉପଭୋଗ୍ ନ ଥିବୁ ସେ କଥା ମୁଁ ଏଠି ରହି ମଧ୍ୟ ଅନୁଭବ କରୁଛି ।

"ସମ୍ମୁଖ ରଣକ୍ଷେତ୍ର ଏଇ । ବନ୍ଧୁକଗୁଳିର ଶବ୍ଦରେ କାନ ଫାଟି ଯାଉଛି । ଚିଠି ଲେଖିବାର ବେଳ ଏବେ ନୁହେଁ । ଆଉ କେତେ ମିନିଟ୍ ପରେ ମୋର ଅଧିନାୟକଙ୍କର ଗୋଟିଏ ସୈନ୍ୟ ଦଳ ଆଗକୁ ଆଗକୁ ମାଡ଼ି ଚାଲିବେ । ତାପରେ ଆଉ ଚିଠି ଲେଖିବାକୁ ସମୟ ନଥିବ କି ଅବସ୍ଥା ନ ଥିବ । ସେଥିପାଇଁ କହି ଦେଇ ଯାଉଛି ତୋର ପୁଅ ଆଉ ତାର ସାଥୀମାନେ ଅସୀମ ସାହସ ସହକାରେ ଶତ୍ରୁ ସୈନ୍ୟ ସଙ୍ଗରେ ଲଢ଼ୁଛନ୍ତି । ତାଙ୍କର ସାହସ, ତ୍ୟାଗ ଆଉ ଦେଶ ପ୍ରେମ ପାଖରେ ବିଦେଶର ଅତି ଆଧୁନିକ ଅସ୍ତ୍ରଶସ୍ତ୍ର ତୁଚ୍ଛ ହୋଇ ଯାଇଛି । ଗୋଟିଏ ଗୋଟିଏ ଭାରତୀୟ ସୈନ୍ୟ ସହିତ କୋଡ଼ିଏଟି ଶତ୍ରୁ ସୈନ୍ୟ ମଧ୍ୟ ସମକକ୍ଷ ହୋଇ ପାରୁନାହାନ୍ତି । ବାପା ଯେଉଁ ସ୍ୱାଧୀନତା ଆଣିବାକୁ ପ୍ରାଣ ଦେଲେ, ସେଇ ସ୍ୱାଧୀନତାକୁ ରକ୍ଷା କରିବାକୁ ଯାଇ ମୁଁ ଯଦି ପ୍ରାଣ ଦିଏ, ତୁ କାନ୍ଦିବୁ ନାହିଁ । ମୁଁ କେତେ ଗର୍ବ ଅନୁଭବ କରୁଛି, ତୁ ଜାଣୁ ?

"ମା'ଙ୍କର ଯେଉଁ ଆଶୀର୍ବାଦଫୁଲ ତୁ ପଠେଇଥିଲୁ, ତାହା ମୋ ପାଖରେ ଅଛି । ଦୁର୍ଗାଙ୍କର ସିଂହ ଆମକୁ ରକ୍ଷା କରୁଛି । ନିର୍ଭୟରେ ଆମେ ଲଢ଼ି ଯାଉଛୁ । ଆମର ବିଜୟ ସୁନିଶ୍ଚିତ । ତୋ ସହିତ ମୋ ଦେଶ ଜନନୀକୁ ପ୍ରଣାମ ଜଣାଉଛି— ଜୟହିନ୍ଦ୍ ।"

ଶ୍ରୀକାନ୍ତର କଣ୍ଠ ବାଷ୍ପରୁଦ୍ଧ । ଝରି ଆସୁଥିବା ଆବେଗ ଲୁହକୁ ଲୁଚେଇବା ପାଇଁ ସେ ବୋଉଆଡ଼ୁ ମୁହଁ ଫେରେଇ ନେଇ ଚାଲି ଯାଉଛି । ନୀରବରେ ଧାର ଧାର ହୋଇ ଲୁହ ଝରି ଆସୁଛି ମଣିକାଞ୍ଚନଙ୍କ ଆଖିରୁ । ଅତୀତ ଉପରୁ ଗୋଟି ଗୋଟି ହୋଇ ପରଦା ଉଠି ଯାଉଛି ।

ଏମିତି ଗୋଟିଏ ଚିଠି ସେ ପାଇଥିଲେ କାହିଁ କେତେ ବର୍ଷ ତଳେ ୧୯୪୨ ମସିହାରେ ସ୍ୱାମୀଙ୍କଠାରୁ । ଇଂରେଜ ସରକାରଙ୍କ ଜେଲରେ ବନ୍ଦୀ ସେ ସେତେବେଳକୁ । କେତେ ବା ବୟସ ସେତେବେଳେ ମଣିକାଞ୍ଚନଙ୍କ ? ଶ୍ରୀକାନ୍ତକୁ ମାତ୍ର ତିନି ବର୍ଷ ହେବ । ଆଉ ବସନ୍ତ ? ଧରାର ଆଲୋକ ଦେଖିବା ପାଇଁ ସେତେବେଳେ ସେ ଅପେକ୍ଷା କରିଛି କଣିକାଞ୍ଚନଙ୍କ ଗର୍ଭ ଭିତରେ ।

ଚୂଲି ଉପରେ ଧଳା ଫୁଟୁଛି । ମନରେ ଫୁଟୁଛି ଅସଂଖ୍ୟ ସାନ ବଡ଼ କଥାର ସ୍ମୃତି । ସେଇଠି ଦୁଆରବନ୍ଧକୁ ଆଉଜି ନିଜର ଅଜାଣତରେ କେତେବେଳେ ବସି ପଡ଼ିଛନ୍ତି ମଣିକାଞ୍ଚନ ।

ନୂଆବୋହୂ ହୋଇ ଘରେ ପାଦ ଦେଉ ଦେଉ ଏ ଘରର ସବୁ ଦାୟିତ୍ୱ ତାଙ୍କ ନିଜ କାନ୍ଧ ଉପରକୁ ଟେକି ନେବାକୁ ପଡ଼ିଥିଲା । ବିଧବା ବୃଦ୍ଧା ଶାଶୁ ମୁଣ୍ଡ ଆଉଁସି ଦେଇ କହିଥିଲେ—"ତୁ ମୋର ଲକ୍ଷ୍ମୀ ! ସଦାନନ୍ଦ ପାଗଳାଟାଏ । ଖାଲି ଦେଶ ଦେଶ ହୋଇ ବୁଲୁଛି । ଘରକଥା କିଛି ବୁଝିଲା ନାହିଁ । ଜେଲ୍ ଯାଉଛି, ମାଡ଼ ଖାଉଛି, ଦଳ ଦଳ କରି ଲୋକଙ୍କୁ ଘରକୁ ଆଣି ସଭା କରୁଛି । ଆଜିଯାଏ ତାର ସବୁ ଅଳି ଅର୍ଦ୍ଦଳି ମୁଁ ସମ୍ଭାଳିଲି । ଏଥର ତୁ ସମ୍ଭାଳିବୁ । ତା' ଉପରେ ରାଗିବୁ ନାହିଁ—ଅଭିମାନ କରିବୁ ନାହିଁ, ମୋ ମା !"

ସଦାନନ୍ଦ ପାଖରେ ଠିଆହୋଇ ହସୁଥିଲେ । ଲମ୍ବା ଚଉଡ଼ା ଗୋରା ତକ୍ ତକ୍ ସୁନ୍ଦର ମୁହଁରେ ସେ ହସଟା ସେତେବେଳେ ଚଉଦ ପନ୍ଦର ବର୍ଷର କିଶୋରୀ ମଣିକାଞ୍ଚନକୁ ଖୁବ ଅଦ୍ଭୁତ ଲାଗିଥିଲା । ବିବାହ ପୂର୍ବରୁ ସେ ଜାଣିଥିଲେ ସ୍ୱାମୀ ତାଙ୍କର ଦେଶ କାମ କରନ୍ତି, କିନ୍ତୁ କଣ ସେ ଦେଶ କାମ, କେମିତି ତାକୁ କରିବାକୁ ହୁଏ ସେ ବିଷୟରେ କିଛି ଧାରଣା ନଥିଲା ତାଙ୍କ ମନରେ ।

ପ୍ରଥମେ ଯେତେବେଳେ ସ୍ୱାମୀଙ୍କ ସହିତ ମଣିର ଦେଖା ହେଲା, ସେତେବେଳେ ସେ ମଧ ଶାଶୁଙ୍କ କଥା ପୁନରାବୃତ୍ତି କରିଥିଲେ—

"ବୋଉ କଥା ଶୁଣିଲ ତ ମଣି ? ସମ୍ଭାଳିପାରିବ ମୋ ସଙ୍ଗେ !" ପୂର୍ବର ସେଇ ହସ ସେମିତି ତାଙ୍କ ମୁହଁରେ ଲାଗି ରହିଥିଲା ।

ମଣିକାଞ୍ଚନଙ୍କୁ ସବୁ ଯେମିତି ଅଦ୍ଭୁତ ମନେ ହେଉଥିଲା । ସେ ଅବାକ୍ ହୋଇଯାଇଥିଲେ । ବିବାହ, ସ୍ୱାମୀ, ଶ୍ୱଶୁରଗୃହ ବିଷୟରେ ତାଙ୍କ ମନ ଭିତରେ ଅବାଳ୍ୟରୁ ଯେଉଁ ସବୁ ଧାରଣା ସୃଷ୍ଟି କରି ହୋଇଥିଲା, ସବୁ ଯେମିତି ମୁହୂର୍ତ୍ତକେ ଭିତରେ ଓଲଟପାଲଟ ହୋଇ ଯାଉଥିଲା । ବଲ ବଲ କରି ସଦାନନ୍ଦଙ୍କ ମୁହଁକୁ ଚାହିଁ ନିଜର ଅଜାଣତରେ ସେ ତାଙ୍କ ପ୍ରଶ୍ନର ଜବାବ୍ ଦେଇ ପକାଇଥିଲେ, "ହଁ ସମ୍ଭାଳି ପାରିବ ।"

ସେହି ଧନଠାରୁ ସେ ବୁଲୁଥିଲେ । ମୁଦ୍ଧର୍ଭ କ ପାଇଁ କ୍ଷୋଭ ପ୍ରକାଶ କରି ନାହାନ୍ତି ଅଭିମାନ କରି ନାହାନ୍ତି । ଦଳ ଦଳ ଲୋକଙ୍କୁ ନେଇ ସଦାବ୍ରତ ଘରକୁ ଆସିଛନ୍ତି—ରାତି ବାଡ଼ି ସେମାନଙ୍କୁ ଖୁଆଇଛନ୍ତି ସେ । ସମସ୍ତ ଅସମର୍ଥର ଜିଗ୍ର ହୋଇନ । ଘର ଖାନ୍ ତଲାସ ହୋଇଛି ! କାଗଜପତ୍ର ସବୁ ଜବତ୍ ହୋଇଯାଇଛି । ସଦାବ୍ରତ ବନ୍ଦୀ ହୋଇଛନ୍ତି । ଜମିବାଡ଼ି ବନ୍ଧା ପଡ଼ିଛି । ଦୁଇବେଳା ଖାଇବାକୁ ଜୁଟି ନ ହେଁ, ତଥାପି ମଣି କାଞ୍ଚନ ବୁଲୁଛନ୍ତି । ସଦାବ୍ରତ ଜେଲରୁ ଫେରି ମଣି ମୁହଁରେ ଦେଖିଛନ୍ତି ହସ—ଯେତେ ସେପରି ନିଜକୁ ଦର୍ପଣରେ ଦେଖୁଛନ୍ତି । ସଦାବ୍ରତ ବି ଅବାକ୍ ହୋଇଯାଇଛନ୍ତି ।

"ତୁମେ ହସୁଛ ମଣି ?"

ସେମିତି ହସି ହସି ମଣି ଜବାବ ଦେଇଛନ୍ତି—"ତୁମଠାରୁ ଶିଖିଛି ସିନା !"

କେତେ ଶୀଘ୍ର ଶୀଘ୍ର ସେଇ ଜୀବନର ବି ଅବସାନ ହୋଇଗଲା । ପୋଲିସ୍ ମାଡ଼ରେ ଆହତ ହୋଇ ସଦାବ୍ରତ ସେଥର ଯେତେବେଳେ ଘରକୁ ଫେରିଲେ, ସେତେବେଳେ ତାଙ୍କ ଅଉ ଉଠିବାର ଉପାୟ ନଥିଲା । ଏତେ ସୁନ୍ଦର ମଣିଷଟା ଶୁଖି କଳାକାଠ ହୋଇ ଯାଇଥିଲା, ସେମିତି ସଦା ପ୍ରଫୁଲ୍ଲ ରହି ମଣି ତାଙ୍କର ସେବା ଶୁଶ୍ରୂଷା କରିଥିଲେ, କିନ୍ତୁ ସଂପୂର୍ଣ୍ଣ ଆରୋଗ୍ୟ ହେବା ପୂର୍ବରୁ ପୁଣି ଯେତେବେଳେ ତାଙ୍କୁ ବନ୍ଦୀ କରି ନିଆଗଲା, ସେତେବେଳେ ତିନି ବର୍ଷର ଶିଶୁ ଶ୍ରୀକାନ୍ତ ଏବଂ ଆଗତ ପ୍ରାୟ ସନ୍ତାନ ଉଦ୍ଦେଶ୍ୟରେ ସଦାବ୍ରତ କହି ଯାଇଥିଲେ ତାଙ୍କର ଶେଷ କଥା "ପିଲାମାନଙ୍କୁ ଦେଶ କାମରେ ଉଦ୍‌ବୁଦ୍ଧ କରିବ । ମୋ କଥା ସେମାନଙ୍କୁ ମନେ ପକାଇ ଦେଉଥିବ ।" ସଦାବ୍ରତ ବୋଧହୁଏ ଅନୁଭବ କରିଥିଲେ, ସେ ଆଉ ଜେଲ୍‌ଖାନାରୁ ଫେରି ଆସିବେ ନାହିଁ ।

"ବୋଉ ! ଚମକି ପଡ଼ିଲେ ମଣି । କେତେବର୍ଷ ତଳୁ ହଠାତ୍ ଫେରି ଆସି ସେ ଯେମିତି ବିମୂଢ଼ ହୋଇଗଲେ କିଛିକ୍ଷଣ ପାଇଁ ।

"ବୋଉ, କାଲି ରାତିରେ ଶାସ୍ତ୍ରୀଜୀ ଦେଶବାସୀଙ୍କ ଉଦ୍ଦେଶ୍ୟରେ ରେଡ଼ିଓରେ କଣ କହିଛନ୍ତି ଜାଣୁ ?" ଶ୍ରୀକାନ୍ତ ଖବରକାଗଜଟା ବୋଉ ଆଗରେ ମେଲାଇ ଧରିଲା । "ଯେଉଁମାନେ ସମ୍ମୁଖ ରଣାଙ୍ଗନରେ ଲଢ଼ୁଛନ୍ତି, ସେମାନେ ଦେଶର ଯେତକ ଗୌରବ, ଯେଉଁ କୃଷୀମାନେ ଦେଶକୁ ଖାଦ୍ୟ ଯୋଗାଇବା

ପାଇଁ ମୁଣ୍ଡ ଝାଳ ତୁଣ୍ଡରେ ମାରି କାମ କରି ଯାଉଛନ୍ତି, ସେମାନେ ମଧ୍ୟ ଦେଶର ସେବକ ଗୌରବ ।"

ମଣିକାଞ୍ଚନ ଶ୍ରୀକାନ୍ତର ମୁଣ୍ଡରେ ହାତ ବୁଲାଇ ଦେଉଥିଲେ । ପୁଅର ମନୋଭାବ ବୁଝିବା ତାଙ୍କ ପକ୍ଷରେ କଷ୍ଟକର ନ ଥିଲା । ବସନ୍ତ ଭଳି ସେ ବି, ଦେଶପାଇଁ ଲଢ଼ୁଛି, ବାପାଙ୍କର ଶେଷ ଇଚ୍ଛାକୁ ପୂରଣ କରୁଛି, ଏଇ କଥା ସେ ବୋଉଙ୍କୁ ଜଣାଇବାକୁ ଚାହୁଁଥିଲା । କୃଷି ବିଦ୍ୟାରେ ଡ଼ିଗ୍ରୀ ନେଇ ସେ ଗାଁକୁ ଆସି କ୍ଷେତରେ କାମ କରୁଥିଲା, ନିଜର ବୁଦ୍ଧି ବିଦ୍ୟା ଦେଇ ନିଜର ଆଉ ଗାଁର ଉତ୍ପାଦନ ବଢ଼ାଇବାକୁ ଚେଷ୍ଟା କରୁଥିଲା । ତା ମନରେ ଆଜି ପ୍ରଶ୍ନ ଉଠିଛି— ସେ କଣ ଦେଶ ପ୍ରତି ତାର କର୍ତ୍ତବ୍ୟରେ ହେଳା କରୁଛି କି ?

ମଣିକାଞ୍ଚନ ହସୁଛନ୍ତି । ପୁଅ ମୁଣ୍ଡରେ ହାତ ରଖି କହୁଛନ୍ତି— 'ତୋ ପ୍ରଶ୍ନର ଉତ୍ତର ତେବେ ଶାସ୍ତ୍ରୀଜୀଙ୍କ ବକ୍ତୃତାରୁ ତତେ ମିଳିଲା । ଏପର୍ଯ୍ୟନ୍ତ କଣ ସନ୍ଦେହରେ ଥିଲୁ ?"

ତାର ବୋଉ ତେବେ ତା ମନକଥାକୁ ଠିକ୍ ଧରି ନେଇଛି । ସତେଇଶ ବର୍ଷ ଯୁବକ ହଠାତ୍ ଆତ୍ମ-ସଚେତନ ହୋଇପଡ଼ିଲା ।

ସମବାୟ ଫାର୍ମର ସଭ୍ୟମାନେ ଘର ଭିତରକୁ ପଶି ଆସୁ ଆସୁ କହୁଛନ୍ତି —"ଶ୍ରୀକାନ୍ତ ଭାଇ, ଶାସ୍ତ୍ରୀଜୀଙ୍କ ନୂଆ ସ୍ଲୋଗାନ ଶୁଣିଲଣି—"

"ଜୟ ଜବାନ୍, ଜୟ କିଷାନ୍ !"

ଗମ୍ଭୀର ପରିତୃପ୍ତିର ଏକ ହସ ହସି ମଣିକାଞ୍ଚନ ଯୋଷେଇ ଘର ଭିତରକୁ ଚାଲିଯାଉଛନ୍ତି । ଏମାନଙ୍କ ପାଇଁ ରାନ୍ଧିବାକୁ ହେବ—ସଦାବ୍ରତଙ୍କ ଅମଳରୁ ଯାହା ସେ କରି ଆସିଛନ୍ତି ।



# ଅଶୁଭ ପୁତ୍ରର କାହାଣୀ

ଶ୍ରୀ ଅଚ୍ୟୁତାନନ୍ଦ ପତି

ସେ ଦିନ ସେ ଶ୍ରେଷ୍ଠ ସେଗ୍ରୁ ନୂଆ ଅଁଟି ପହିଲ୍‌କରି ଆଖି ଖୋଲିଲା । ଗଛର ଅନ୍ଧାରିଆ ଖୋଲ ଭିତରେ ସେ ଆଖି ଫିଟାଇ ପ୍ରଥମେ ଦେଖିଲା ଅନ୍ଧାର, ଚାରି ଆଡ଼େ ଖାଲି ଅନ୍ଧାର । ମା' ତାର ତା' ଉପରେ ଡେଣା ଘୋଡ଼ାଇ ବସିଥିଲା । ତଳେ କୁଟାକାଠିର ଶେଯ ଉପରେ କଅଁଳ ହାଡ଼ ଗୋଡ ଦି'ଖଣ୍ଡ ତାର ଥୋଇ ଥାଇ ସେ କେତେ କଥା ସପନ ଦେଖି ଯାଉଥିଲା । ଗଛର ଉପର ଡାଳରେ କାଆ କାଆ ହୋଇ କଣ ଗୁଡ଼ାଏ ଖୁବ୍ ଜୋରରେ ପାଟି କରି କରିମଇଲେ । ତା ମା'ଆର ଡେଣା କାହିଁକି ଥରି ଉଠିଲା । ସେ ପକ୍ଷୀଟୁଆକୁ ଟିକିଏ ଭଲକରି ଚତଗ୍ରାଇ ଦେଇ ତାକୁ ପେଟ ଆଡ଼କୁ ଜାକି ଆଣିଲା ତାକୁ ଆରାମ ଲାଗିଲା । ସେ ଚୁଁ ଚୁଁ ହୋଇ ହସି ପକାଇଲା । ମାଆ ତାର କୁନି ଥଣ୍ଟରେ ଥଣ୍ଟ ଘଷି ତାକୁ ତୁନି ହୋଇ ରହିବାକୁ ଚୁପ୍ ଚୁପ୍ କରି କହିଲା । ସେ କିଛି ବୁଝି ପାରିଲା ନାହିଁ । ମାଆ ଯେତେବେଳେ କହୁଛି ଖାଲି ଚୁପ୍ ହୋଇଗଲା । ମାଆର ନରମ ପର ଭିତରେ ଉଷୁମ ଟାଣି ଟାଣି ତା ଦେହରୁ ଚମତ୍କାର ଭଙ୍ଗା ସବୁ ଫିଟି ଫିଟି ଯାଉଥିଲା । ତାକୁ ଭାରି ହାଲୁକା ଲାଗୁଥିଲା । ସେ ଭାବୁଥିଲା ସେ ଠିଆ ହୋଇ ପଡ଼ିବ । ସେ କାଠି କୁଟାର ବନ୍ଧଣୀ ଭିତରେ ତା'ର ଗୋଡ଼ ଟିକିଏ ସଳଖେଇ ଦେଲା । ମାଆ ବି ତାର କାହିଁକି ତା' ଉପରକୁ ଟିକିଏ ଦୁଷ୍ଟ ବସିଲା । ତା ଛୋଟ ଛୋଟ ଗୋଡ଼ ଉପରେ ଥଣ୍ଟ ଛୁଟକେଇ ଛୁଟକେଇ ମା' ତାର ଗୋଡ଼କୁ ସିଧା କରି ଦେଲା । ସେ ଉପରକୁ ଟିକିଏ ଚାହିଁଲା । ଅନ୍ଧକାର କାହିଁକି କମ୍ ଜଣାଗଲା । ସେ ଆଖି ବନ୍ଦ କରି ପକାଇଲା । ଟିକିଏ ମା' ଆଡ଼କୁ ଚାହିଁ ପୁଣି ଉପରକୁ ଚାହିଁଲା । ମା'

---

ଗାଳ୍ପିକ : (୧୯୩୦—) ଏ କାଳର ଜଣେ ସୁପରିଚିତ କଥାକାର—ଘଟଣା ଚୟନ ଏବଂ ତାହାର ପରିବେଷଣ କଳାରେ ପାରଦର୍ଶିତା ତାଙ୍କର ଗଳ୍ପ ସମୂହରୁ ମିଳିଥାଏ । ଗଳ୍ପ ଲେଖାରେ ମିଥ୍‌ର ସାଂକେତିକ ପ୍ରୟୋଗ କାହାଣୀ ବିନ୍ୟାସର ପ୍ରବାହ ଖୁବ୍ ସ୍ବଚ୍ଛନ୍ଦ ଓ ଆବେଗ-ସାନ୍ଦ୍ର । ପ୍ରକାଶିତ ଗ୍ରନ୍ଥ—ନିଷ୍ପେନ ଉବାଚ; ଅଶୁଭ ପୁତ୍ରର କାହାଣୀ ।

ତା'ର ଯେମିତ ତା' ମନର କଥା ବୁଝି ପାରିଲା । ତା କୁନି ଚେପା ନାକରେ ନିଜର ନାକକୁ ଲଗେଇ ହସି ହସି କହିଲା—"ଧନ ମୋର କେଡ଼େ ହୁସିଆର ହେଇଗଲଣି ! ଉପରକୁ ଚାହୁଁଛୁ—ଦୁନିଆ ଦେଖିବୁ । ହଉ, ଟିକଏ ଆଉ ଅପେକ୍ଷା ଧର । ତୋ ଡେଣାରେ ଭଲ ଜଣ ପର ବାହାରି ଯାଉ । ମୁଁ ତତେ ଉଡ଼ିବା ଶିଖେଇଦେବି । ଡେଣା ଭରସାରେ କେତେ କେତେ ନୂଆ ନୂଆ ଉପାୟ ଅଛୁ ସବୁ ବତେଇ ଦେବି । ତୁ ସରଗରେ ବୁଲି ବୁଲି କେତେ ନୂଆ ନୂଆ ଜିନିଷ ଦେଖିବୁ । ତୁ ଏଠି ଯିବା ଅନ୍ଧାରରେ ପଡ଼ିଛୁ, ଦୁନିଆକୁ ବାହାରିଗଲେ ସେଠି ଆଉ ସବୁବେଳେ ଅନ୍ଧାର ନଥିବ । ସରଗରେ କେଡ଼େ ସୁନ୍ଦର ଗୋଲ ଜହ୍ନ ଆଲୁଅ ଖାଲି ବୋହି ପଡୁଥିବ—ଆଖି ମିଟି ମିଟି କରୁଥିବା କୁନି କୁନି ତାରା ମୁଁ ସବୁ ଚିହ୍ନେଇଦେବି । ତୁ ଖାଲି ବଡ ହେଇ ଯା ।" ମାଆ ତା'ର ଝୋଳକଡ଼ରୁ ଖଣ୍ଡେ ପାଚିଲା ପିଜୁଳି ଆଣି ତା' ଥଣ୍ଟଭିତରେ ଦେଇଦେଲା । ସେ ଗିଳିଦେଲା । ଆଃ, କି ମିଠା ! ସେ ମନେ ମନେ ଭାବିଲା ଦୁନିଆ ଦେଖିବ । ଦୁନିଆଟା ଭାରି ମିଠା ।

ଗଛଡାଳରୁ କ'ଣ ଗୁଡ଼ାଏ ଗୋଟାକପରେ ଗୋଟାଏ ହୁଟେ ହୁଟେ ହେଇ ଦୌଡ଼ା ଦୌଡ଼ି ଲଗେଇଦେଲେ । ମାଆ ପେଟ ତଳେ ଶୋଇ ଶୋଇ ତାକୁ ଟିକିଏ ନିଦ ଆସିଯାଇଥିଲା । ସେ ସପନ ଦେଖିଯାଉଥିଲା— ଖାଲି ଦୁନିଆର ସପନ । ଚାରିଆଡ଼େ ଖାଲି ମିଠା ପିଜୁଳି ଖଣ୍ଡ ଖଣ୍ଡ ହୋଇ ବିଛେଇହୋଇ ପଡ଼ିଛି । ସରଗରୁ ଗୋଲ ଗୋଲ ଜହ୍ନସବୁ ତଳକୁ ଓହ୍ଲାଇ ଆସୁଛନ୍ତି । ବିଲ୍‌କୁଲ ଅନ୍ଧାର ନାହିଁ । ହସରେ ତାର ଥଣ୍ଟ ଖୋଲିଗଲା । ଗଛଡାଳରୁ ପାଟି ଶୁଣି ସେ ଉଠିପଡ଼ିଲା । 'ମାଆ'—ସେ ଖୋଜି ପକାଇଲା ଅନ୍ଧାର କିଣ ଆହୁରି ବେଶୀ ହେଇଗଲଣି । ତା' ମନଟା ଖଟା ହେଇଗଲା । ସାଙ୍ଗେ ସାଙ୍ଗେ ସେ ଆଲୁଅର ସପନ ଦେଖି ଉଠିଛି । ମାଆ ତାର ଖୋଲ ମୁହଁରେ ବସି ଡେଣାକୁ ଖୋଲି ଝାଡ଼ି ହେଉଥିଲା । ସେ ଡାକ ଛାଡ଼ିଲା, "ମାଆ, ଦୁନିଆ ମୁଁ ଆଜି ଦେଖିବି । —ଜହ୍ନର ଆଲୁଅ ମୁଁ ଆଜି ଦେଖି ଯିବି ।" ମାଆ ତା'ର ପାଖକୁ ଘୁଞ୍ଚିଆସି ତାକୁ ପେଟପାଖକୁ ଟାଣି ନେଲା । ଅନ୍ଧାର ଆହୁରି ଜଟି ଜଟି ହେଇ ଉଠିଲା । ସେ ମାଆର ପେଟତଳୁ ଖସିଗଲା । ତାକୁ ଅନ୍ଧାର କାହିଁକି ଆଉ ଭଲ ଲାଗିଲା ନାହିଁ । ମାଆ ହସି ହସି କହିଲା—"ଦୁନିଆକୁ ତୁ ଅଯେଛୁ । ତୋ' ଦୁନିଆ, ତତେ କିଏ ଯିବାକୁ ମନାକରୁଛି । ଦୁନିଆକୁ ବଡ଼ ହେଇ, ଖୁବ୍ ବଳୁଆ ହେଇ ନ ଗଲେ ଦୁନିଆ ଠକେଇ ଦେବ । ତୁ ଅପେକ୍ଷା ଧର, ଆଉ କେତେଟା ଦିନ । ମୁଁ ବଳେ ନେଇଯିବି । ତୁ ବସାରେ ଥା—ମୁଁ

ଯାଉଛୁ, ଦୁନିଆର ଡାକରା ଆସିଲାଣି, ଧନକୁ ମୋର ଖୋଜ କରିବଣି । ମୁଁ ଯାଉଛି ତୋ ଲାଗି ନୂଆ ନୂଆ ଜିନିଷ ଆଣିବି । ତୁ ବେଶି ପାଟି କରିବୁ ନା ।” ମାଆ ତା'ର ଥଣ୍ଟରେ ଟିକିଏ ତାକୁ ଗେହ୍ଲରେ ଖୁମ୍ପିଦେଇ ବସାରୁ ବାହାରି ପଡ଼ିଲା । ଖୋଲ ମୁହଁରେ ଟିକିଏ ଅଟକି ତାକୁ ପୁଣି ଚାହିଁଲା । ଖୋଲ ସେ ପାଖରେ ଫଡ଼ଫଡ଼ ହୋଇ କଣ୍ଢେଇ ଗୁଡ଼ାଏ କୁଆଡ଼େ ଉଡ଼ିଗଲେ । ମାଆ ତାର ଦୃଷ୍ଟିରୁ ଖସିଗଲା । ସେ ମାଆ ଯିବା ବାଟକୁ ଟିକିଏ ଚାହିଁଲା । ତା'ପରେ ଆଖି ମୁଦିଲା । ତାକୁ ବାହାରର ଅନ୍ଧାର ଭଲ ଲାଗୁନଥିଲା । ଆଖି ବୁଜିବୁଜି ସେ ଦେଖିଲା ଦୁନିଆଟାଯାକ ଆଲୁଅରେ ଭରିଯାଇଛି । ଦୁନିଆ ତାକୁ ଡ଼ାକୁଛି । ଆଖି ତାର ଲାଗି ଲାଗି ଆସୁଥିଲା । ସେ ଦେଖୁଥିଲା, ଡ଼େଣାରେ ତା'ର ତା' ମାଆ ଡ଼େଣାଠାରୁ ବ ବେଶି ପର ବାହାରିପଡ଼ିଛି । ସେ ଜହ୍ନ ଦେଶରେ ପକ୍ଷି ପରି ପରି ଉଡ଼ିଯାଉଛି ।

ତା' ଗୋଡ଼ ଏବେକି ଶକ୍ତ ହୋଇଗଲାଣି । ସେ ଠିଆ ହୋଇପାରୁଛି । ଡ଼େଣାରେ ତା'ର ପକ୍ଷିପରୁ ଆସ୍ତେ ଆସ୍ତେ ଅଙ୍କୁରି ଆସୁଛି । ଦୁନିଆକଥା ଭାବିଭାବି ମନ ତାର ପୁଲକିଲାଣି । ଦୁନିଆର ଭାବନାରେ ତା'ର ଜହ୍ନ ଆଲୁଅ, ପିଳୁଳିର ଛବି ଖାଲି ଭରିରହିଛି । ସବୁଦିନ ସେ ମାଆ ପାଖରେ ଲାଗିଛି, ସେ ଦୁନିଆ ଦେଖିଯିବ । ମାଆ ତାର ଜହ୍ନ ରାତିରେ ଥରେ ପହଲ୍‌କରି ତାକୁ ଖୋଲ ମୁହଁକୁ ଆଣିଲା । ତାପରେ ଆକାଶରେ ଚାନ୍ଦ ଦେଖେଇଦେଲା, ଆଖି ତାର ଝଲସି ଉଠିଲା । ଆଃ, କି ସୁନ୍ଦର । ସେ କେତେବେଳେ ଅନ୍ଧାରିଆ କୋଠରିଭିତରେ ପଡ଼ିଥିଲା । ମାଆର ଡ଼େଣା ପାଖରେ ସେ ଡ଼େଣା ମେଲାଇ ଟିକିଏ ଟିକିଏ ଉଡ଼ିଶିଖିଲା । ସେ ଏ ଡ଼ାଳରୁ ସେ ଡ଼ାଳକୁ ଗଲା । ପକ୍ଷି ତାର ବୋଲେଇପଡ଼ିଲା । ଗଛର ସବା ଉପର ଡ଼ାଳକୁ ଗୋଟାଏ ଦିନରେ ଉଠିଗଲା । ସେ ଜହ୍ନଆଡ଼େ ଚାହିଁ ବସିଲା । ଡ଼େଣାରୁ ତା'ର ବଥା ଆସେ ଆସେ କମିଆସୁଥିଲା । ସେ ଅନେଇଦେଖିଲା, ଜୋହ୍ନା ଝରିଆସୁଛି । ଥଣ୍ଟ ମେଲାକରି ସେ ଭାବିଲା ମେଞ୍ଚାଏ ସେଥିରୁ ପିଇଯିବ । ମାଆ ତା'ର ଖୋଜିଖୋଜି ଆସି ପହଞ୍ଚିଲା । ବୁଝେଇ ସୁଝେଇ ଖୋଲଭିତରକୁ ନେଇଗଲା ।

ଥରେ ଦିନବେଳେ ମାଆ ତା'ର ଟିକିଏ ଦୂରେଇ ଯାଇଥିଲା । ସେ ଆସ୍ତେ ଆସ୍ତେ ଖୋଲ ପାରହୋଇ ଚାଲିଆସିଲା । ଆଃ, ବାହାର କେତେ ଆଲୁଅ ! ଆଜି କ'ଣ ଜହ୍ନଟା ବେଶି ଚକ୍‌ଚକ୍ କରୁଛି । ସେ ଚାହିଁଲା । ଆଖି ତା'ର ପୋଡ଼ି ଉଠିଲା । ବାପରେ ବାପ କେତେ ଆଲୁଅ ' ଉପର ଖୋଲରୁ ବଣିଚୁଆ ଦୁଇଟା ବାହାରିଆସି ଏ ଡ଼ାଳରୁ ସେ ଡ଼ାଳକୁ ଡେଇଁ ଡେଇଁ ଯାଉଥାନ୍ତି । ମାଆପାଖରେ ତାଳ ପକେଇ ଗୀତ ବୋଲୁଥାନ୍ତି । ଧ୍ୟା ମନ ତାର ଖରାପ ହୋଇଗଲା । ତା ମାଆଟା ବଣି ମାଆ ଭଳି ସେତେ ଭଲ ନୁହେଁ । ତାକୁ ତ କାହିଁକି ଲୁଚେଇକା

ବଡ଼ ଜହ୍ନ ତଳେ ଗୀତ ବୋଲେଇ ଶିଖେଇ ନାହିଁ । ସେ ଗୀତ ବୋଲି ସୋଜା କଣିକୁଆ ପାଖକୁ ଗଲା । ସେ କୁଅ ଦ'ଟା . ଡରିଗଲେ । ପାଟି କରିଉଠିଲେ । ତାଙ୍କ ମାଆ ଆସି ଏକୁ ଖୁମ୍ପି ପକାଇଲା । ପାଟି ଶୁଣି ଦୂରରୁ କୁଆଟେ କାଆ କାଆ କରି ଉଡ଼ି ଆସିଲା । ପେଚା ମାଆର ନିଦ ଭାଙ୍ଗିଗଲା । ସେ ବାହାରକୁ ଧାଇଁଆସି ଛୁଆକୁ ଆପଣା ଖୋଲଭିତରକୁ ଟାଣିନେଲା । ମାଆ ଉପରେ ପେଚା ଛୁଆ ଭାରି ରାଗିଲା । ତା' ମାଆ ଯବୁ ଭଣ୍ଡୁର କରିଦେଲା । ରାଗରେ ମା'କୁ ଦୁଇ କାମୁଡ଼ା ବି ଦେଲା । ଖୋଲ ପାରହେଇ ପଳାଇବାକୁ ବସିଲା । ମାଆ ଚୁଟେଇଧରି ଭିତରକୁ ଆଣିଲା । କାହିଁକି ଇମିତିକା ବଡ଼ ଜହ୍ନ ତାକୁ ଦେଖେଇ ଦେଉନି ବୋଲି ସେ ଭାରି ପାଟିକଲା । ମାଆ ତାକୁ ତୁନି ପଡ଼ିବାକୁ ବୁଝାଉ ବୁଝାଉ କାନ୍ଦି କାନ୍ଦି କହିଲା—"ସେ ଜହ୍ନ ନୁହେଁରେ କୁନା, ସେ ସୂର୍ଯ୍ୟ—ଆମ ଦୁନିଆରେ ସୂର୍ଯ୍ୟ ନାହିଁ ଆମେ ଅନ୍ଧାରରେ ରହୁବା—ଜହ୍ନ ବି ସବୁଦିନେ ଆସିବନି—ଆମ ଭାଗ୍ୟରେ ଅନ୍ଧାର ପଡ଼ିଛି ।" ସେ ମାଆର କଥାରେ ରାଗିଗଲା । କାହିଁକି ସୂର୍ଯ୍ୟର ଦୁନିଆକୁ ସେ ଯିବ ନି ? କାହିଁକି ଆଲୋକର ରାଜ୍ୟରେ ସେ ବୁଲିବ ନି ? କିଏ ସେ ଇମିତି ତାଙ୍କୁ ହଇରାଣ କରିବାକୁ ନିୟମ କରିଛି ? ସେ ପୁଣି ଆରେଇଲା । ମାଆ ତା'ର ପେଟତଳକୁ ଟାଣିନେଲା । ମାଆ ପେଟରୁ କେତେଟା ପର ସେ ଥଣ୍ଟରେ ଉପାଡ଼ି ଆଣିଲା । ମାଆ ତାର ଖାଲି କାନ୍ଦିଲା । ମାଆ କାନ୍ଦୁଛି, ସେ ଫେରିଆସିଲା । ବସା ସେପାଖରେ କୁଆଗୁଡ଼ାକ ପାଟିରେ କମ୍ପାଉଥାନ୍ତି । କାହିଁକି ସେ ପୋଡ଼ାମୁହିଁ ସୂର୍ଯ୍ୟ କଥା କହି ପୁଅର ମୁଣ୍ଡକୁ ଖରାପ କରିଦେଲା ବୋଲି ମାଆ ତାର ହାଇଟି ହାଇଟି ହେଲା । "ଆମେ ଅନ୍ଧାରର ପୁଅରେ କୁନା, ଆମେ ଦୁନିଆର ଅଭିଶାପ—ଆମେ ଆଲୋକେ ଖୋଜିଲେ ମରିବା—ଆମକୁ ଆଲୁଅ ରାଜୁତିରେ ରଖି ଦେବେ ନାହିଁ ବୋଲି ଶତ୍ରୁଗୁଡ଼ାକ ମେଳା ମେଳା ହେଉଛନ୍ତି ।" ମାଆ ତାର କହୁ କହୁ କାନ୍ଦିଲା । ମାଆକୁ ବୋଧ ଦେଉ ଦେଉ ସେ କହିଲା—"ମାଆ, ତୁ ଟିକିଏ ଧୈର୍ଯ୍ୟଧର—ମୁଁ ବଡ଼ ହୁଏ—ଆଲୁଅ ରାଇଜକୁ ମୁଁ ତତେ ନେଇଯିବି—ମୁଁ ସବୁ ଶତ୍ରୁଙ୍କୁ ମାଆ ନିପାତ କରିଦେବି ।"

ସେଦିନ ମାଅପୁଅ ଦିଜଣ ଆମ୍ବ ଡାଳରେ ବସିଥାନ୍ତି । ଆକାଶରେ ଜହ୍ନ ନଥାଏ । ପେଚାଛୁଆକୁ କିଛି ଭଲଲାଗୁନଥାଏ । ହଠାତ୍ ପାଖ ଘରର ଝରକା ଫାଙ୍କ ଦେଇ ଆଲୁଅ ଦିଶିଲା । ପେଚାଛୁଆଟି ଆନନ୍ଦରେ ହୋଇ ପାଟିକରି ଉଠିଲା । ଘରଭିତରରୁ କଡ଼ା ପାଟିରେ କିଏ ଗାଳିଦେଲା, "ଉଠୁଛୁନା ପୋଡ଼ାମୁହାଁ ହେଠୁ—ପିଠା ଖଣ୍ଡିକା ପଟେଇ ଦାଗିଦେବି ସେ ବୁଝିବୁ...ଦୂର ଦୂର, ତତେ ଝାଡ଼ାବାନ୍ତି ଖାଉ ।" ମାଆ ତା'ର ଛୁଆ ମୁହଁରେ ଥଣ୍ଟ ଲଗେଇ ଆଉ ପାଟି ନ

କରିବାକୁ କହୁଥିଲା । ସେ ମନେ ମନେ ଭାବିଗଲା—ବାଃ, ଅନ୍ଧାରକୁ ଘର ଭିତରେ ଲୁଚେଇ ରଖିବେ । ଅନ୍ଧାରକୁ ଦେଖି କିଏ ଆନନ୍ଦ ହେଲେ ବି ଗୀତ ଶୁଣିବ ? ନା, ତା' ହେବ ନି—ସେ ଝରକା ଭିତର ଦେଇ ଘରଭିତରକୁ ପଶି ଅନ୍ଧାରକୁ ଛଡ଼ାଇ ଆଣିବାକୁ ଚାହୁଁଥିଲା । ମାଆ କେତେ କାନ୍ଦି ବୋବାଇ ଫେରାଇ ଆଣିଲା ।

ସଞ୍ଜ ପରେ ଘରୁ ବାହାରିବା ଆଗରୁ ଦୁଇ ଡେଣାକୁ ଭଲକରି ସେ ଥରେ ଦେଖିନେଲା । ସବୁ ପକ୍ଷି ଉଠିଯାଇଛି । ଗୋଡ଼କୁ ସିଧା କରି ଦୁଇ ତିନିଥର ନ ଚଗଲା—ବେଶ୍ ଶକ୍ତ ଅଛି । ଥଣ୍ଟକୁ ଗଛ ଖୋଲ ଦେହରେ ବାଡ଼େଇଦେଲା—ଖୁବ୍ ଟାଣ ହୋଇଗଲାଣି । ସେ ଉଡ଼ି ଚାଲିଗଲା । ରାତିର ଅନ୍ଧାର ଭିତରେ ଗୋଟାଏ ଗଛରେ ଖାଲି ବସିରହିଲା । ସେ ଆଉ ଘରକୁ ଫେରିବ ନି । ସେ ସୂର୍ଯ୍ୟ ଦେଶରେ ବୁଲିବ । ସେ ଆଲୋକ ଦେଖିବ । ତା'ର ଶତ୍ରୁକୁ ସେ ଠିକ୍ କରିବ । ରାତି ପାହିଆସିଲା । ପୂର୍ବ ଆକାଶ ନାଲି କିରଣରେ ଫାଟିପଡ଼ିଲା । ସୂର୍ଯ୍ୟ ରାଇଜରେ ଆଲୋକର ଏଇ ପ୍ରଥମ ପ୍ରବେଶକୁ ସେ କେବେ ଦେଖି ନ ଥିଲା । ସେ ଭୋଳ ହୋଇଗଲା । ଶହ ଶହ ପକ୍ଷୀ ଆକାଶରେ ଗୀତ ଗାଇଗାଇ ଉଡ଼ିଗଲେ । ତାର ଶହଶହ ଜାତି ଭାଇ ଆଲୋକରେ ବୁଲିବୁଲି ଉପଭୋଗ କରିବେ, ଆଉ ସେ ସବୁଦିନପାଇଁ ଡ଼ରିମରି ଅନ୍ଧାରିଭିତରେ ପଡ଼ିଥିବ ? ନା, ତା' ମନରେ ଦମ୍ଭ ପୂରି ଉଠିଲା । ସୂର୍ଯ୍ୟ ଆସ୍ତେ ଆସ୍ତେ ଆକାଶରେ ଉପରକୁ ଉପରକୁ ଉଠି ଆସୁଥିଲେ । ଦିନର ଆଲୁଅ ବେଶି ବେଶି ବଢ଼ି ଯାଉଥିଲା । ଏତେ ବଡ଼, ଏତେ ସୁନ୍ଦର, ଆଲୁଅର ରାଜ୍ୟରେ ତା'ପାଇଁ କଣ ଟିକିଏ ଜାଗା ନାହିଁ ? ନା, ଆଜି ମନପୂରି ସେ ଉପଭୋଗ କରିବ । ସେ ଦୁନିଆଁକୁ କହିଦେବ ସେ ଆଲୋକର ପୁଅ—ତାର ମଧ୍ୟ ଏ ରାଜ୍ୟରେ ଦାବି ଅଛି ।

ସେ ମନଇଚ୍ଛା ଚାରିଆଡ଼େ ବୁଲିବାକୁ ଲାଗିଲା । ଆଖି ଖୋଲି ଘଣ୍ଟା ଘଣ୍ଟାଧରି ଦୁନିଆର ସବୁ ଜିନିଷ ଦେଖିଲା । ହଠାତ୍ ପଛଅଡ଼ୁ କିଏ ତାକୁ ଆକ୍ରମଣ କଲା । ସେ ବୁଲି ପଡ଼ିଲା । ମାଆ ତାକୁ ଯେଉଁମାନଙ୍କର ଶତ୍ରୁ ବୋଲି ଚିହ୍ନେଇ ଦେଇଥିଲା । ଏଇମାନେ ତାଙ୍କଠୁଁ ଆଲୋକକୁ ଛଡ଼ାଇ ନେଇଛନ୍ତି । ସେ ମଧ୍ୟ ଥଣ୍ଟକୁ ଠିକ୍ କରିନେଇ କୁଆଟା ଉପରେ ତାର ଚଢ଼ାଉ ଆରମ୍ଭ କରିଦେଲା । କୁଆଟା ପ୍ରତିରୋଧ କରୁ କରୁ ତାର ଜାତିଭାଇଙ୍କୁ ଡ଼ାକ ପକାଇଲା । ଦଳଦଳ କୁଆ କାଆକାଆ କରି ମାଡ଼ିଆସିଲେ । ଏତେ ବଡ଼ ଶକ୍ତିଶାଳୀ ଦଳ-ଆଗରେ ସେ ରହିପାରିବନି ବୋଲି ଭଲକରି ବୁଝିଲା । ଆଗରେ ଦିଶୁଥିବା

କୋଠାଘର ଆଡ଼କୁ ଖୁବ୍ ଜୋରରେ ଡେଣା ପିଟିପିଟି ଉଡ଼ିଗଲା । କାନ୍ଥର ଗୋଟାଏ ଛେଟ ଖୋଲ ଦେଇ ସେ ଗଳିଗଲା, ଘରର ଭିତର ପାଖପର୍ଯ୍ୟନ୍ତ ସେ ପଶିଗଲା । ବାହାରେ ଏଣେ କୁଆ ମେଞ୍ଚା ମେଞ୍ଚା ହେଉଥାନ୍ତି । ସେ ଟିକିଏ ନିଶ୍ଚିନ୍ତରେ ସେଠି ବସିଲା । ଟିକିଏ ସୁବିଧା ମିଳୁ, ଶତ୍ରୁର ଦଳ ଭାଙ୍ଗିଯାଉ, ସେ ବି ତା'ର ପ୍ରତିଶୋଧ ନେଇନେବ । ସେ ଆଲୋକ ସେ ଆଜି ଉପଭୋଗ କରିବ—ନିଶ୍ଚୟ କରିବ ।

କୋଠାଘର ଭିତରେ ପଲଙ୍କର ମୋଟା ଗଦିଉପରେ ଧୀରୁମଲ୍ଲ ଶୋଇଛନ୍ତି । ତୁହାକୁହା କରି ଜରର କମ୍ପ ତାଙ୍କ ଉପରକୁ ମାଡ଼ି ଆସୁଛି । ଧୀରୁମଲ୍ଲ ବ୍ୟସ୍ତ ହୋଇପଡ଼ୁଛନ୍ତି । ଜରର ବେଦନାଭିତରେ ସେ ମଝିରେ ମଝିରେ ଚିତ୍କାର କରି ଉଠୁଛନ୍ତି—ଦେଖ, ସୋରଷ ତେଲରେ ଯେପରି ·୮° ଭାଗ ଆଗରୁ ମିଶେ · ହଁ, ମଦନା ବାଗିକ ଉପରେ ·ସେମିତି ଆଉ ପାଞ୍ଚ ନମ୍ବର କେଶ୍ ଦାୟର ହେବ—·ଶଳାର ଭଉଣୀଟେ ଅଛି ସେ ଭାରି ସଖ ଦେଖେଇ ହେଉଛି—ମୁଁ ଟିକିଏ ଧରି ପକେଇଲି, ସେଥିରେ ସେ ଶାଳୀ ମାଇକିନା ମତେ ମାରିବାକୁ ଉଠୁଥିଲା ..ଶୁଣୁଛ କୋଡ଼ିଏ ଜଣାଯାଏଁ ମୁଣ୍ଡା ପଠାଇ ବଇମିମ ସାହୁ ବିଲରୁ ଧାନ କାଟିଆଣ, ଯେତେ ଟଙ୍କା ଖର୍ଚ୍ଚ ହେବ ଦେଖାଯିବ—ପାଠ ଦି'ଅକ୍ଷର ପଢ଼ିଛି ବୋଲି ମତେ ଶଳା ନମସ୍କାର କରିବ ନି ..ଏଠି ଆସି ଶୁଣ, ଶହେ ·ଭରି ଗ୍ରେଗ ଅଫିମ ଦେବ ବୋଲି ସେ କଲିକତିଆ ବଙ୍ଗାଳୀ କହିଯାଇଛି, ତାକୁ ଟିକିଏ ଆଖି ରଖିଥିବ ..

ଏଇମାନେ ଆଲୋକ ରାଜ୍ୟର ଖୁବ୍ ବଡ଼ଲୋକ . ଏଙ୍କପାଇଁ ସୂର୍ଯ୍ୟ ତାଙ୍କର ଆଲୋକ ସବୁଦିନେ ଦିଅନ୍ତି । ପେଚ୍ଚାକୁଆଟି ଭଲକରି ଆଖି ଖୋଲି ଚାହିଁଲା । ହଠାତ ଧୀରୁମଲ୍ଲଙ୍କ ଶଯ୍ୟା ନିକଟରୁ ଜଣେ ଆଲୋକ ରାଜ୍ୟର ଶ୍ରେଷ୍ଠ କର୍ମୀଙ୍କ ଆଖି ପେଚ୍ଚାକୁଆ ଉପରେ ପଡ଼ିଲା । "ଅଶୁଭ, ଅଶୁଭ, ମହା ବଜ୍ରପାତ ଯୋଗ · ଘରେ ଉଲ୍ଲୁକ ବସିଲା ...ମାଲିକ ବେମାର ପଡ଼ିଛନ୍ତି ." କର୍ମୀ ମିଟିମିଟି ହୋଇ ପାଟି କଲେଇଲେ । ଗୋଟାଏ ଲମ୍ବ ବାଉଁଶ ଆଣି ବଚରେ ପେଚ୍ଚାକୁଆଟାକୁ ଖେଞ୍ଚିଖେଞ୍ଚି ନଡ଼ା ଦିଆଗଲା । ଦୁଇଟାଯାକ ଡେଣା ତାର ଜଖମ ହୋଇଗଲା । ସେ ଆସ୍ତେ ଆସ୍ତେ ଉଡ଼ିଯାଇ କୋଠାଉପରେ ପଡ଼ିଲା । ଗଛ ଉପରୁ କେତେଟା କୁଆ ଧାଇଁ ଆସି ତାଙ୍କର ଆକ୍ରମଣ ଚଳେଇଲେ । କୁଆଙ୍କ ପାଟି ଶୁଣି ଜଣେ ଚାକର କୋଠାଉପରକୁ ଯାଇଁ ବାଡ଼ିରେ ପେଚ୍ଚାକୁଆଟି ଉପରେ ପ୍ରହାର ଲଗେଇଲା । କୁଆଟା ତଳକୁ ଗଡ଼ି ପଡ଼ିଲା । ପେଚ୍ଚାଟା ବସିଛି ବୋଲି କୋଠା ଉପରେ ମେଞ୍ଚାଏ କୁଟା ଜାଳି ହଳଦି ପାଣିରେ ଲିଭାଇ ଦିଆଗଲା । କେଡ଼େ ବଡ଼ ଅରିଷ୍ଟ ଘଟିଗଲା ସତେ ?

କୁଆମାନେ ତଳକୁ ଯାଇ ଖୁମ୍ପା ପୁଣି ଆରମ୍ଭ କରିଦେଲେ । ସେଇ ଛୁଆଟିର ଡେଣାମୂଳରୁ ଥୋପା ରକ୍ତ ଝରିପଡୁଥିଲା । ସେ ଥରେ ଉପରକୁ ଚାହିଁଦେଲା । ସୂର୍ଯ୍ୟ ଖୁବ୍ ଉଜ୍ଜ୍ୱଳ ହୋଇ ଉଠିଲେଣି । ଖୁବ୍ କଷ୍ଟରେ ଉଠିପଡ଼ି ସେ ବସାଆଡ଼େ ଛୁଟିଲା । ହେଲେ ସେ ଉଠି ପାରିଲା ନି । ଗଛମୂଳେ ପଡ଼ିଗଲା । ମାଆ ତାର ପୁଅ ଫେରିନି ବୋଲି ଚାହିଁ ଚାହିଁ ବସିଥାଏ । ଭୟ କରିବ, ଦିନଟାରେ କେଉଁଠି ଛୁଆଟା ରହିବ ? ମନଟା କାହିଁକି ଗୋଳେଇ ଘାଣ୍ଟି ହେଉଥାଏ । ପୁଅର ପାଟି ଶୁଣି ସେ ଗଛ ତଳକୁ ଧାଇଁ ଆସିଲା । ପୁଅର ଏ ଅବସ୍ଥା ଦେଖି ତା' ପାଟିରୁ କଥା ବାହାରିଲା ନି । ସେଇ ଛୁଆଟି ଥରେ ଉପରକୁ ଚାହିଁଲା । ତାର ବସା ପାଖର ବଣିଛୁଆ ଡେଇଁ ଡେଇଁ ଗୀତ ବୋଲୁଥିଲେ । ସେ ମାଆ ଆଡ଼କୁ ଚାହିଁଲା । ଦୂରରୁ କୁଆ ଦଳର କାଆ କାଆ ପାଟି ପାଖେଇ ଆସୁଥିଲା । ସେ ମାଆକୁ ଥରି ଥରି ପାଖକୁ ଡାକି, ମାଆ ଗୋଡ଼ ପାଖରେ ମୁଣ୍ଡ ଗଡ଼େଇ ଗଡ଼େଇ କହିଲା—"ମାଆ, ତୁ କାନ୍ଦନା—ମୋର ଆଉ ଭାଇ ହେଲେ ତାକୁ କହିବୁ, ତା ଭାଇ ଆଲୋକ ରାଜ୍ୟ ଜୟ କରିବାକୁ ଯାଇଁ ମରିଛି ।"

ସେଇ ଛୁଆଟି ସବୁଦିନ ପାଇଁ ଆଖି ବୁଜିଦେଲା । ସୂର୍ଯ୍ୟ ତାଙ୍କ ଦୁନିଆ ଉପରେ ବେଶି ବେଶି ଆଲୋକ ଢାଳି ଦେଉଥିଲେ ।



# ଆରଣ୍ୟକ

**ଶ୍ରୀ ମନୋଜ ଦାସ**

---

ମିସେସ୍ ମିଟି ଦ୍ୱାରଦେଶରେ ମୃଦୁ ଶବ୍ଦଟିଏ ଶୁଣିଲେ । ସେ ଆଖି ଖୋଲିବା ପୂର୍ବରୁ ଆହୁରି କେତେଥର ଏଭଳି ଠକ୍ ଠକ୍ ଶବ୍ଦ ହୋଇଥିବ । ସେସବୁ ଆଘାତ ବଡ଼ ମୃଦୁ । ମଝିରେ ଏକ ଏକ ମିନିଟ୍‌ର ବ୍ୟବଧାନ । ଚୌକିଦାର ଅନ୍ୟଥା କରି ପାରନ୍ତା ନାହିଁ । ସେ ଜାଣେ ।

ମିସେସ୍ ମିଟି ପ୍ରଶସ୍ତ କୋଠରିଟି ଭିତରଯାକ ଥରେ ଆଖି ବୁଲାଇ ଆଣିଲେ । ତାଙ୍କ ଗୋଡ଼ ପାଖରେ ପଡ଼ିଥିଲେ ରାଜା ସାହେବ.. ଗଦାଏ ଅଶ୍ଳୀଳ ଆବର୍ଜନା । ରାଜା-ସାହେବଙ୍କ ଫୁଲ୍ ଓଠ ଉପରେ ଅଧ ଡଜନ ମାଛି ପିକ୍‌ନିକ୍ କରୁଥିଲେ ।

ଆଉ ଦୂରନ୍ତ ହୁଇ୍‌ଲ୍‌ବର୍ଗ ମିଃ ଗ୍ରକୋଡ଼ ନାକ ଡାକୁଥିଲେ...ଦୁଃସ୍ୱପ୍ନର ଆର୍ତ୍ତନାଦ ଭଳି ।

ଆଉ ମିଃ ମିଟି ଓ ମିସେସ୍ ଗ୍ରକୋଡ଼ ଚଟାଣ ଉପରେ ପରସ୍ପର ମୁହାଁମୁହିଁ ଶୋଇଥିଲେ; ସମ୍ଭବତଃ ପରସ୍ପର ଲାଗିଲାଗି ହୋଇ ଆସିବାର ପ୍ରୟାସ ଭିତରେ ଅଚେତନ ହୋଇ ଯାଇଥିଲେ ।

---

ଗାଳ୍ପିକ (୧୯୩୪—) କାୟସ୍ଥ ଓ ଆନ୍ତର୍ଜାତୀୟ ସ୍ତରରେ ସମ୍ମାନିତ କଥାକାର । 'ଦିଗନ୍ତ' ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ । ଇଂରାଜୀ ସାହିତ୍ୟର ଅଧ୍ୟାପକ । ଶ୍ରୀ ଅରବିନ୍ଦ ଦର୍ଶନ ଦ୍ୱାରା ପ୍ରଭାବିତ । ତରୁଣ ଅବସ୍ଥାରେ ମାର୍କସୀୟ ଚିନ୍ତାଧାରା ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ବର୍ତ୍ତମାନ ପଣ୍ଡିଚେରୀରେ ଅବସ୍ଥାନ କରୁଛନ୍ତି । ତାଙ୍କ ଗଳ୍ପଗୁଡ଼ିକରେ ମଣିଷ ଜୀବନର ବୈଚିତ୍ର୍ୟମୟ ଅଙ୍ଗୀକାରର ପ୍ରତୀକାତ୍ମକ ଚିତ୍ର ଉପଲବ୍ଧ ହୁଏ । ପ୍ରକାଶିତ ଗ୍ରନ୍ଥ :"ଆରଣ୍ୟକ, ବନକନ୍ୟା, ସମୁଦ୍ରର କ୍ଷୁଧା ପ୍ରଭୃତି । ମନୋଜ ଦାସଙ୍କ 'କଥା ଓ କାହାଣୀ' କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ।

ଦ୍ୱାରଦେଶରେ ଆଉ ଏକ ଆଘାତ । ମିସେସ୍ ମିଟି ଆଉ ଥରେ ଚେତ ଉଠିଲେ । ସେଉଁ ପର୍ବତ ପ୍ରମାଣ ଜଡ଼ତା ତାଙ୍କ ଚେତନା ଉପରେ ଚାପି ବସିଥିଲା, ସେଥିରୁ ଅନେକଟା ଖସିଗଲା । ଅବଶ୍ୟ କେତେବେଳେ ସେମାନେ ଘଣ୍ଟାଏଁ ଶୋଇପଡ଼ିଥିଲେ, ସେ କଥା ଏ ଯାଏଁ ସେ ମନେ ପକାଇ ପାରୁ ନ ଥିଲେ । ତେବେ ଅର୍ଦ୍ଧଚେତନ ବାର୍ ହାଟିକୁ ଜଣେ ଭିତରକୁ ଫେପାଡ଼ି ଦେବା, ତତ୍ପରେ ଗୃହପଟେ ନାଚ ନାଚ ସୁର ସମଭିବ୍ୟାହାରରେ ସେଥିରୁ ଅର୍ଦ୍ଧ ସିଝ ମାଂସ ଚେନାଏ ଚେନାଏ କାଟି ଖାଇବା ପର୍ଯ୍ୟନ୍ତ ସବୁ ମନେ ଅଛି । କେତେ ଅଯୁତ ବର୍ଷ ତଳେ ମଣିଷର ଯିମିତି ଉତ୍ପତ୍ତି, ବନ୍ୟ ଅବସ୍ଥା ଥିଲା, ସେତକ ପାଇଁ ତାହାର ଭିତରକୁ ଫେରିଯିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ । ମି. ଟ୍ରେକେଞ୍ଜି ଅବଦମିତ ପ୍ରାଗୈତିହାସିକ ପ୍ରବୃତ୍ତିର ଅବାଧ ମୁକ୍ତିତତ୍ତ୍ୱ ଉପରେ ଜଣେ ପଣ୍ଡିତ । ସେଭଳି ସାମୟିକ ବେହ୍ଲାକୃତ ମୁକ୍ତି କେତେ ସ୍ୱାସ୍ଥ୍ୟକର, ପାନାହାର ଆରମ୍ଭ ହେବା ପୂର୍ବରୁ ସେ ବିଷୟରେ ସେ ଗୋଟାଏ ଲମ୍ବା ବକ୍ତୃତା ଦେଇଥିଲେ । ( କିଏ ବା ଶୁଣୁଥିଲା ସେଇ ବୃଦ୍ଧ ବିବୃତ ତତ୍ତ୍ୱ ! )

ଦ୍ୱାରଦେଶରେ ପୁନର୍ବାର ଏକ ଆଘାତ । ଏଥର ମିସେସ୍ ମିଟିଙ୍କ ସ୍ମୃତିରେ ଚହଟି ଗଲା ସମସ୍ତ ଇତିବୃତ୍ତ ।

(ଦୁଇ)

ପୂର୍ବ ଦିନ ଦ୍ୱିପ୍ରହର—

ମାଇଲ ମାଇଲ ବଣବୁଦା ଓ ରୁଢ଼ ପଥରମାଟି ଛେଚ, ଦଳି, ଅରଣ୍ୟ ଭିତରର ଏଇ ଫରେଷ୍ଟ "ବାଂଲୋ" ଅଭିମୁଖେ ଜିପ୍ ଚାଲିଥିଲା । ଆହତ ପ୍ରଜାପତିଟିଏ ଚକାତଳେ ଚାପା ପଡ଼ି ଯାଆନ୍ତେ ମିସେସ୍ ମିଟି ଚିତ୍କାର କଲେ, "ଇଃ, ବଡ଼ କରୁଣା ହୁଏ ସେ !" ମାଷ୍ଟାନ୍ ଭଳି ଚହଟ, ତରଳ କାରୁଣ୍ୟ ଯେମିତି ଧାର ଧାର ବହି ଆସିବ, ସିମିତି ତାଙ୍କ ମୁହଁର ରେଖା ସବୁର ସାବଲୀଳ କୁଞ୍ଚନ । ସେଇ ଗଳିତ କାରୁଣ୍ୟକୁ ଚଟାପଟ୍ ଚାଟିନେବାକୁ ଉଦ୍ୟତ ହେଲା ଭଳି ମିଃ ଗୃକୋଡ଼ ତାଙ୍କର ବାଘ ନଖ ମଣ୍ଡିତ ଅଢକାସ୍ତ ମୁହଁ ମିସେସ୍ ମିଟିଙ୍କର ସ୍କର୍ଟ୍ ନିକଟକୁ ଆଣି କହିଲେ, "ଛିଃ ! ଏତେ କୋମଳ ହେଲେ ଚଳିବ, Child ?" ମିସେସ୍ ଗୃକୋଡ଼ ଯିମିତି ଗୋଟାଏ ଦୁର୍ଗନ୍ଧରେ ଆକ୍ରାନ୍ତ ହୋଇଛନ୍ତି, ସିମିତି ନାସିକା କୁଞ୍ଚନ କରି କହିଲେ, "ମିଟି ସାହେବଙ୍କ ଭଳି ସ୍ୱାମୀ ତୁଳନାରେ ଟିକିଏ ମାତ୍ରାଧିକ କୋମଳ !" ମିସେସ୍ ଗୃକୋଡ଼ ଯେତେବେଳେ ପ୍ରତି ଅକ୍ଷର ଉପରେ ଜୋର ଦେଇ ଅପାତ ନିସ୍ପୃହ-ଝୁଟ କଣ୍ଠରେ

ଶବ୍ଦମାନ ଉଚ୍ଚାରଣ କରନ୍ତି, ଯେତେବେଳେ ତାଙ୍କର ଗୋଟାଏ ଆଖି ନିସ୍ପମିତ ବନ୍ଦ ହୋଇଯାଏ । ଅଦୃଶ୍ୟ ବିଷ ଚହଟିଯାଏ ବାତାବରଣରେ; ସ୍ୱୟଂ ଭୁଜଙ୍ଗ ସେଥିରେ ମ୍ରିୟମାଣ ହୋଇପଡ଼ିବ । ତେବେ ସେ ବିଷର ଅନ୍ତରଙ୍ଗ ସେବନରେ ପରନ୍ତୁକ ମିଃ ଗ୍ରୁକୋଡ଼ଙ୍କର ସ୍ୱଭାବାନ୍ତର ଘଟିଲା ନାହିଁ ।

ଆତ୍ମଭୋଳା ଅବସ୍ଥାରୁ ଏଥର ଯେ ମିଃ ମିଟିଙ୍କ କଥାର ଗାଡ଼ି ଛୁଟିବ, ତା’ର ସିଗ୍‌ନ୍ୟାଲ ଡାଉନ୍ ହେଲା । ତଦର୍ଥେ, ବିପୁଳ ଚୁରୁଟ୍‌ଟିକୁ ସେ ହାତରେ ନ ଛୁଇଁ ମୁହଁର ଗୋଟାଏ କୋଣକୁ ନେଇ ଆସି ଟପ୍ କିନା ତଳକୁ କରିଦେଲେ । ସେ ହେଲେ ଉର୍ଦ୍ଧ୍ୱନେତ୍ର ଏବଂ ତାଙ୍କ ବଦନରେ ଖେଳିଗଲା ଏକ ଜାଗ୍ରତ ‘କହିବ ? ତମେମାନେ କ’ଣ ବୁଝିପାରିବ ?’’ ସ୍ୱାର୍ଥପ୍ରଚୁର ପ୍ରଚ୍ଛନ୍ନ ହସ । ସେ ଯେ ସାମାନ୍ୟ କଥା କିଛି କହିବାକୁ ଯାଉ ନାହାନ୍ତି, ଏଥିରୁ ତା’ର ଚେତାବନୀ । କୌଣସି ବ୍ୟକ୍ତି ବିଶେଷ ଉପରେ ନିବଦ୍ଧ ନ କରି ସଭିଙ୍କ ମଝିରେ ଶୂନ୍ୟଟାରେ ନିଜର ଦୃଷ୍ଟିକୁ ଝୁଲାଇ ରଖି ସେ କହିଲେ—

“ମିସେସ୍ ଗ୍ରୁକୋଡ଼ ! ଏଇ ନାରୀସୁଲଭ କୋମଳତା ଜିନିଷଟା ମୋ ପାଇଁ ବଡ଼ ରହସ୍ୟମୟ । ମୁଁ କିଛି ବୁଝେନା—ବୁଝିଲେ ? ବୁଝେନା । ତେବେ, ସତକଥା କହିଲେ, ଆପଣଙ୍କର ମିସେସ୍ ମିଟିଙ୍କ ପାଖରେ କିଛି ଗୋଟାଏ ଅଛି, ଯେଉଁଟାକୁ ମୁଁ ଭୟଙ୍କର ଭଲ ପାଏ । ହଁ, ସତକଥା କହିଲେ, ଯୁଦ୍ଧକ୍ଷେତ୍ରରେ ଶତ୍ରୁକୁ ଖତମ୍ କରିବାଠାରୁ ବଳି ଭଲ ପାଏ । ହୁଃ ହୁଃ ! ହ୍ୟାଃ, ସତକଥା ।”

“ଚୁପ୍ କର, ଟିକି ହେଟା !” ମିସେସ୍ ମିଟି ଆପତ୍ତି ଜଣାଇ ମୁହଁ ଉପରେ ରୁମାଲ୍ ଓ ରୁମାଲ୍ ଉପରେ ମୁହଁ ଉପରେ ବଷ୍ଟ ହେବାକୁ ଲାଗିଲେ ।

ମିସେସ୍ ମିଟି ଆହୁରି କିଛି ସମୟ ପର୍ଯ୍ୟନ୍ତ ସେଇଭଳି କୋମଳମତି ବାଳିକାଟିଏ ହୋଇ ରହିଲେ—ମିସେସ୍ ଗ୍ରୁକୋଡ଼ଙ୍କ ପ୍ରବଳ ଅନ୍ତର୍ଦ୍ଦାହ ସତ୍ତ୍ୱେ । ତା’ପରେ ହଠାତ୍ ଏକ ମୁହୂର୍ତ୍ତରେ ତାଙ୍କର ବିଚରଣଶୀଳ ଦୃଷ୍ଟି ଉତ୍ତେଜନାରେ ଟଗ୍‌ବଗ୍ ଫୁଟି ଉଠିଲା ଝିମିତ !

“ଷ୍ଟୋ ଡ୍ରାଇଭର ! ଥାମ୍ !”

ରାସ୍ତାର ବାମକୁ ଏକ ଅର୍ଦ୍ଧବୃତ୍ତାକାର ପରିସର । ତା’ର ତିନି କଡ଼ ବୁଲିଛି ଅନୁଚ୍ଚ ପାହାଡ଼ ।

ଜିପ୍ ରହିଗଲା । ପ୍ରଜାପତିଟିଏ ଉଡ଼ିଗଲେ ପବନରେ ଯେତିକି ତରଙ୍ଗ ହୁଏ, ସେଥିରେ ବି ଚହଲି ଯିବାରେ ଅଭ୍ୟସ୍ତା ମିସେସ୍ ମିଟି, କିନ୍ତୁ ଆକସ୍ମିକ

ବ୍ରେକ୍ ଘର୍ଷିତ କାର୍‌ଟିରେ ନିସ୍ପନ୍ଦ ହୋଇ ରହି ଯାଇଲେ । ପ୍ରାୟଶଃ ଏକଚକ୍ଷୁ ମିସେସ୍ ଗ୍ରୁକୋଡ଼ଙ୍କର ଉଭୟ ଆଖି ଅସ୍ୱାଭାବିକ ସ୍ଫୀତ ଦେଖାଗଲା । ମିଟି ସାହେବଙ୍କ ଆତ୍ମଭୋଳା ଭାବ ଅନ୍ତର୍ହିତ ହୋଇ ଯାଇଥିଲା ।

ପାହାଡ଼ ତଳେ ସେହି ଅର୍ଦ୍ଧବନ୍ୟ ଭିତରେ ହରିଣଟାଏ । କଳାଳୁଣ୍ଡିଆ ମେଘ ଭଳି ମସୃଣ ଦେହରେ ଝଲକାଏ ବିଦ୍ୟୁତ୍ ସ୍ତିମିତ ଲାଖି ହୋଇ ରହିଯାଇଛି ।

ଜନ୍ତାମନ୍ତ୍ରି ଫାଟିଲା ଭଳି ସଭିଏଁ ଜିପ୍ ଭିତରୁ ଛୁଟିଆସି ଓଡ଼ିଲେ । ବୁଦାରୁ ବୁଦା ଡେଇଁ ହରିଣ ବାଟୁଳି ଭଳି ଛୁଟୁଛି, ଏକ, ଦୁଇ, ତିନ, ପୁଣି ତିନ, ଦୁଇ, ଏକ୍ । ସେ ଏକାଣ୍ଡି ଗତିର ପୁନରାବୃତ୍ତି କରୁଛି । ତିନି ଦିଗରେ ପଥରୋଧ କରିଛି ପାହାଡ଼ । ଏକମାତ୍ର ଖୋଲା ଦିଗଟିକୁ ଆବୋରି ରହିଛନ୍ତି ନଅଜଣ । ସେମାନଙ୍କ ହାତରେ ପାଞ୍ଚଗୋଟି ବନ୍ଧୁକ । ମିସେସ୍ ଗ୍ରୁକୋଡ଼ଙ୍କ ହାତରେ ବନ୍ଧୁକ ନାହିଁ । ହେଲେ, ତାଙ୍କ ଆଖି ଯିମିତ ଦୁଇଟି ଜ୍ୱଳନ୍ତ ବୁଲେଟ୍‌ରେ ପରିଣତ ହୋଇଥିଲା ।

ମିନିଟିଏ ଏପଟ ସେପଟ ହୋଇ ହରିଣ ଗୋଟାଏ ଦୁଃସାହସିକ ପଦକ୍ଷେପ ନେଲା । ସେ ଡ୍ରାଇଭର ଶ୍ୟାମଳେନ୍ଦୁର ଉଦ୍ୟତ ବନ୍ଧୁକ ଆଗ ଦେଇ ଅପର ପଟରେ ଗହନ ବୁଦାମାନ ଭିତରକୁ ଝାସଦି ଚାଲିଗଲା ।

“ଶୁଟ୍ ।” ମିସେସ୍ ମିଟି ଚିଲେଇ ଉଠିଲେ ।

କିନ୍ତୁ ଶ୍ୟାମଳ ଟ୍ରିଗାର ଟିପିଲା ନାହିଁ । ଅନ୍ୟ ଦିଗରେ ଶ୍ୟାମଳିମା ଭିତରେ ହରିଣଟି ଗୋଟିଏ ସୁନାର ଛୁରିକା ଭଳି ବନ୍ଧ ହୋଇ ଅଦୃଶ୍ୟ ହୋଇଗଲା ପରେ ସେ ବନ୍ଧୁକ ଅବନମିତ କଲା ।

ତା'ପରେ ପାଞ୍ଚଗୋଟି କ୍ରୋଧ ଥର ଥର ଦାବି ଆଗରେ ଶ୍ୟାମଳ କୈଫିୟତ୍ ଦେଲା, “ହାତ ଗଲା ନାହିଁ । ସେଇଟି ହରିଣୀ । ଗର୍ଭବତୀ ।”

ରୁମାଲରେ ମୁହଁକୁ ଶଙ୍ଖୁଡ଼ାଏ ପୋଛି ଆଣିଲେ ମିସେସ୍ ମିଟି, “କେଡ଼େ ଆସ୍ପର୍ଦ୍ଧା ! ପୁଣି ଅଶ୍ଳୀଳ କଥା ବି କହି ପାରୁଛ ।” ସେ ପ୍ରାୟ କାନ୍ଦି ପକାଇବାକୁ ଯାଉଥିଲେ, କିନ୍ତୁ ମିଃ ଗ୍ରୁକୋଡ଼ ତାଙ୍କୁ ଆଶ୍ୱାସନା ଦେଲେ, “ଆହା ଆପଣ ପୁଣି ସେମିତ କୋମଳ ହେଲେ ମାଡାମ୍ ! ପରବର୍ତ୍ତୀ ଗୁଜନହ୍‌ରେ ଆପଣ ନିଜେ ଗୁଳି କରିବେ । ହେଲା ? ବନ୍ଧୁକଟି କୋଳରେ ଧରିଥାନ୍ତୁ ।”

ଏଥର ମିସେସ୍ ମିଟି ଡ୍ରାଇଭର୍ ଶ୍ୟାମଳ ପାଖରେ ବସିଲେ । ସେଇ ଉଦ୍ଧତ ଯୁବକ ହାକ ପାଞ୍ଚ ଜଣଙ୍କ ବେଦନା ଓ ଆବେଗ ପ୍ରତି ଟିକିଏ ବି ଭ୍ରୂକ୍ଷେପ

କଲ ଭଳି ମନେ ହେଉ ନଥିଲା । ତା'ର କାରଣ, ତା'ର ଖାଉନ୍ଦ ରାଜାସାହେବଙ୍କ ତା'ର ଅନ୍ତର୍ଦ୍ଧାଁ ଡା, ପରଲୋକଗତ ବୁଢ଼ା ରାଜାଙ୍କର ବହୁ ସନ୍ତାନଙ୍କ ଭିତରୁ ଶ୍ୟାମଳ ଜଣେ । ଅବଶ୍ୟ ତା'ର ଜନନୀ ରାଜାଙ୍କର ସ୍ୱୀକୃତପ୍ରାପ୍ତା ରକ୍ଷିତାବର୍ଗଙ୍କ ଅନ୍ତର୍ଭୁକ୍ତ ହୋଇ ନ ଥିବା ଯୋଗୁଁ ତା'ର ଆଦର ଥିଲା ବହୁତ ନ୍ୟୂନ ।

ସର୍ବଦା ଝିକଏ ବମର୍ଷ, ଅଥଚ ସୁଦର୍ଶନ, ବିଚକ୍ଷଣ ଶିକାରୀ ଶ୍ୟାମଳ ବୁଢ଼ା ରାଜାଙ୍କ ଦେହରେ ସମସ୍ତ ଆଭିଜାତ୍ୟ ବହନ କରୁଥିଲା । ଅଥଚ ବୁଢ଼ା ରାଜାଙ୍କ ଉତ୍ତରାଧିକାରୀ ରାଜାସାହେବ ଖୋଦ୍ ଥିଲେ ବଶେଷତ୍ବହୀନ ଙ୍କବଶ୍ଚାଏ । ଜବନଶକ୍ତିହ ଅର୍ବାଚୀନ ଓ ଅନର୍ଗଳ ବ୍ୟୟ ତାଙ୍କୁ ବହୁଦିନରୁ ଏକ ବିକଳ, ଅକ୍ଷମ ବୁଭୁକ୍ଷୁରେ ପରିଣତ କରିଥିଲା । ଏଣିକି କେବଳ ନାରୀମାନଙ୍କ ଗହଣରେ ଯେତେ ଜୀବ ସମସ୍ତ ସମ୍ଭବ କଟାଇ ସେମାନଙ୍କ ପ୍ରାଣ ନେବା ହିଁ ଥିଲା ତାଙ୍କର ଏକମାତ୍ର ବିଳାସ । ମୁଖ୍ୟତଃ ସେଇ ଲୋଭରେ ସେ ବହୁ ଦିନରୁ ବର୍ଜିତ ତାଙ୍କର ଆରଣ୍ୟକ ନିବାସକୁ ସମ୍ପ୍ରତି ବାସଯୋଗ୍ୟ କରି ସେଠାକୁ ଏହି ଅଭିଯାନର ବ୍ୟବସ୍ଥା କରିଥିଲେ ।

ବାଂଲୋରେ ପହଞ୍ଚିବା ପର୍ଯ୍ୟନ୍ତ ରାଜାସାହେବ ପ୍ରତି ପାଞ୍ଚ ମିନିଟରେ ଶ୍ୟାମଳର ବୋକାମୀ କଥା ସ୍ମରଣ କରି ତାକୁ ଅଭିଶାପ ଦେଉଥାନ୍ତି । ଶ୍ୟାମଳ ନିର୍ବିବାଦରେ ଗାଡ଼ି ଚଳାଉଥାଏ ।

ଅପରାହ୍ନରେ ବାଂଲୋରେ ପହଞ୍ଚି କିଛି ହାଲୁକା ପାନାହାର ପରେ ସେମାନେ ଶିକାରକୁ ବାହାରି ଗଲେ । ଶ୍ୟାମଳ କିନ୍ତୁ ଯିବାକୁ ମଙ୍ଗିଲା ନାହିଁ । କିଛି ସମୟ ହାଉଁମାଉଁ ଗର୍ଜି ରାଜାସାହେବ ଚୁପ୍ ହେଲେ । ସେଇ ହରିଣୀଜନିତ ବ୍ୟର୍ଥତାର ଶୋକରେ ସେଯାବତ୍ ମୁହ୍ୟମାନା ମିସେସ୍ ମିଟି ବି ବାଂଲୋରେ ରହିଲେ ।

ମିସେସ୍ ଗ୍ରିକୋଡ଼ି ମିସେସ୍ ମିଟିଙ୍କ ଆଡ଼କୁ ଚର୍ଯ୍ୟକ୍ ଦୃଷ୍ଟି ନିକ୍ଷେପ କଲେ । କିନ୍ତୁ ମିସେସ୍ ମିଟି ଜାଣିଥିଲେ, ମିଟି ସାହେବଙ୍କ ଆରଣ୍ୟକ ସାନ୍ନିଧ୍ୟର ଲୋଭ ଛାଡ଼ି ରହିଯାଇ ପାରିବେ ନାହିଁ ମିସେସ୍ ଗ୍ରିକୋଡ଼ି । ବୁଦ୍ଧୁବର ମିଃ ଗ୍ରିକୋଡ଼ିଙ୍କ ଉପସ୍ଥିତି ସତ୍ତ୍ୱେ, ଅରଣ୍ୟ ଭିତରେ ବହୁ ହୃଦୟଗତ ଆଦାନ-ପ୍ରଦାନର ସୁଯୋଗ ପାଇବେ ମି. ମିଟି ଓ ମିସେସ୍ ଗ୍ରିକୋଡ଼ି ।

ସନ୍ଧ୍ୟା ଆଗତ ପ୍ରାୟ ।

ଭୌତିକ ନୀରବତା—ମଧ୍ୟେ ମଧ୍ୟେ ଏକ ଅଜଣା ଶବ୍ଦ । ଭୟ, କୌତୂହଳ ଓ ଏକ ଦୁର୍ବାର ଲିପ୍ସାର ସମାବେଶରେ ମିସେସ୍ ମିଟି ଅନନୁଭୂତପୂର୍ବ ଶିହରଣରେ ଥରି ଉଠିଲେ । ତା'ପରେ ଏକୁଟିଆ କିଛି ସୁରାପାନ କରିବାର

ଅବ୍ୟବହିତ ପରେ ହଠାତ୍ ତାଙ୍କର ଅହଂ ଶ୍ୟାମଳର ନିରପେକ୍ଷ ଉଦ୍ଧତ ସ୍ପର୍ଦ୍ଧା ବିରୁଦ୍ଧରେ ବିଦ୍ରୋହ କରି ଉଠିଲା ।

ଏତିକିବେଳେ ଦୂରାନ୍ତରେ ଶୁଭିଲା ଏକ ଗର୍ଜନ ।

"ଏ ଶବ୍ଦ କାହାର ହୋଇପାରେ ?" ମିସେସ୍ ମିଟି ଶ୍ୟାମଳକୁ ପଚାରିଲେ ।

"ବାଘର, ମାଡ଼ାମ୍ !" ଶ୍ୟାମଳ କହିଲା ।

ମିସେସ୍ ମିଟି ଡେଇଁପଡ଼ି ଛିଡ଼ା ହେଲେ ଓ ବାରଣ୍ଡାରୁ ଭିତରକୁ ପଳାଇବା ଅବସରରେ ପୂର୍ବ ଶାସ୍ତିସ୍ୱରୂପ ଝୁଣ୍ଟି ପଡ଼ି ତଳେ ପଡ଼ିଗଲେ ଓ ଶ୍ୟାମଳ ଆସିବା ପର୍ଯ୍ୟନ୍ତ ଉଠିବାର ଉଦ୍ୟମ କଲେ ନାହିଁ । ଆଉ ଯେତେବେଳେ ଶ୍ୟାମଳ ଆସିଲା, ସେତେବେଳେ ଶ୍ୟାମଳ ତାଙ୍କୁ ପୁଣି ତୋଳିଧରିବାର ସୁଯୋଗ ପାଇବା ପାଇଁ ଯେତିକି ପ୍ରୟୋଜନ, ସେ ସେତିକି ମାତ୍ର ଉଠିଲେ ।

ତତ୍ପରେ ଦୁର୍ଘଟଣା ସମ୍ପର୍କରେ କିଛି ଉଚ୍ଚବାଚ ନ କରି ସେ ଗୋଟାଏ ମାରାତ୍ମକ ହସ ଫୁଟାଇ କହିଲେ, "ତୁମେ ଜଣେ ଓସ୍ତାଦ୍ ଶିକାରୀ, ନୁହେଁ ଶ୍ୟାମଳ ?"

ଶ୍ୟାମଳ ବୁଝିଲା । ମିସେସ୍ ମିଟି ତାଙ୍କୁ କୋଡ଼ିଏ ବର୍ଷ ତଳର ଖେଳସାର୍ଥୀଟିଏ ଭଳି ଲାଗିଲେ, ଯିଏ କି ସହଜ ଭାବରେ ଗୋଟାଏ ଖେଳର କୌଶଳ ଶିଖାଇ ଦେଉଛି ମାତ୍ର ।

ଶ୍ୟାମଳ ସୁବୋଧ ବାଳକ ଭଳି ବ୍ୟବହାର କଲା । ତା ମୁହଁରୁ ସେଇ ଇଙ୍ଗିତ୍ ବିଦ୍ରୂପ ମିଶ୍ରିତ ବିପର୍ଯ୍ୟସ୍ତ ହସ କାନ୍ତି ଲିଭିଲା ନାହିଁ । ସେଇ ନୀରବ ହସ ମିସେସ୍ ମିଟିଙ୍କୁ କେବଳ ଯେ ଜଙ୍ଗଲଭିତର ତୃପ୍ତିରୁ ବଞ୍ଚିତ କଲା ତାହା ନୁହେଁ, ତାଙ୍କ ମନରେ ଛାଇଗଲା ତୀବ୍ର ଅପମାନ ଓ ପରାଭବର ଅନ୍ଧକାର ।

ରାଜାସାହେବ ଓ ଅନ୍ୟ ତିନିଜଣ ଅରଣ୍ୟ ଭିତରୁ ଫେରିବାବେଳକୁ ଅନ୍ଧକାର ବହଳ ହୋଇ ଆସିଲାଣି । ମିସେସ୍ ମିଟିଙ୍କ କ୍ଳାନ୍ତନିଦ୍ରା ତୁଟିଗଲା । ସେ ଜର ଜର ଅନୁଭବ କରୁଥିଲେ । କବାଟ ଖୋଲିବାମାତ୍ରେ ପ୍ରଥମେ ତାଙ୍କ ଆଖି ପଡ଼ିଲା ମିସେସ୍ ଗ୍ୟକୋଡ଼ଙ୍କ ଆଖିରେ । ମିସେସ୍ ଗ୍ୟକୋଡ଼ ଯେ ବହୁତ କିଛି କଳ୍ପନା କରି ସାରିଥିଲେ, ତାହା ବୁଝିବାକୁ ତାଙ୍କର ବିଳମ୍ବ ହେଲା ନାହିଁ । ସଥାଶୀଘ୍ର କୋଠରିର ଗୋଟାଏ କୋଣରେ ଚଟାଣ ଉପରେ ଶୋଇ ପଡ଼ିଥିବା ଶ୍ୟାମଳ ଉପରେ ମିସେସ୍ ଗ୍ୟକୋଡ଼ଙ୍କ ଦୃଷ୍ଟି ନିବଦ୍ଧ ହେଲା । ସେ ଦୃଷ୍ଟି ଭୟାବହ । ସେଥିରେ ସୁସ୍ପଷ୍ଟ ଭାବରେ ଫୁଟି ଉଠିଥିଲା ସେ କେଡ଼େ ଶୋଚନୀୟ ଓ ପ୍ରତାରିତ ଅନୁଭବ କରୁଥିଲେ ।

"ଡାର୍ଲିଂ ! ତମକୁ ଏକୁଟିଆ ଛାଡ଼ି ଯାଇଥିବା ହେତୁ ମିସେସ୍ ଗ୍ବୋଡ଼ି ଏତେ ଅଶାନ୍ତ ହେଉଥାନ୍ତି ଯେ ଯେ କଥା . କ'ଣ ଅଉ କହିବି ! ଆଶାକରେ ତମର କିଛି ଅସୁବିଧା ହୋଇ ନାହିଁ ।" କହିଲେ ମିଃ ମିଟି । .

ଯେତେବେଳଯାଏ ସୁରା, ନିଦ୍ରା, ଅନ୍ଧକାର ଓ ସେହି ଭୌତିକ ନିସ୍ତବ୍ଧତାର ଏକକାଳୀନ ଷଡଯନ୍ତ୍ର ପ୍ରଭାବରୁ ପୂର୍ଣ୍ଣ ମୁକ୍ତ ହୋଇ ନ ଥିଲେ ମିସେସ୍ ମିଟି, ଅଥଚ ମିସେସ୍ ଗ୍ବୋଡ଼ଙ୍କର କଳ୍ପନାକୁ ତଥା ସେଇ ଷଡ୍ଯନ୍ତ୍ରର ଅସହ୍ୟ ଦୃଶ୍ୟର ଆସ୍ୱାଦ ସେଯାଏ ଶ୍ୟାମଳ ମୁହଁରେ ଲାଗିରହିଥିବ ବୋଲି ସେ ଆଶଙ୍କା କରୁଥିଲେ, ତାକୁ ଏକକାଳୀନ ନିଶ୍ଚିହ୍ନ କରିଦେବାର ସଙ୍କଳ୍ପ ନେଇ ସେ ମିଟିଙ୍କ ବେଲଟ୍ ଧରି, ତାଙ୍କୁ କୋଠରୀ ଭିତରକୁ ଟାଣି ନେଇ, ହଠାତ୍ କୋହୋଦ୍‌ଗତ କଣ୍ଠରେ କହି ଉଠିଲେ, "ଜାଣ... ଜାଣ...ସେଇ ଜାନୁଆରକୁ ମୁଁ ଚଢ଼ାଇଲି ଗୋଟାଏ ପ୍ରଚଣ୍ଡ ଥାପଡ଼ା !"

"ଶ୍ୟାମଳ କଥା କହୁଛ ?"

"ଅଉ କ'ଣ ! ଲୋକଟା କି ପ୍ରଚଣ୍ଡ ସୈତାନ୍ ।"

କେତେ ମୁହୂର୍ତ୍ତ ପାଇଁ ତହିଁ ବିରାଜ କଲା ଶ୍ମଶାନର ନୀରବତା ।

ଆଜୀବନ ଶ୍ୟାମଳ ବିରୁଦ୍ଧରେ ହେଉଥିବା ଅଭିଯୋଗ ପୋଷଣ କରି ଆସିଥିବା ରାଜାସାହେବ କ୍ରୋଧରେ ଶ୍ୟାମଳ ଆଡ଼କୁ ମାଡ଼ିଗଲେ; କିନ୍ତୁ ତା'ପରେ କ'ଣ କରିବେ ଠଉରାଇ ନ ପାରି ସେଠାରେ ଛିଡ଼ା ହୋଇ କେବଳ ଫଁ ଫଁ ହେଲେ ଓ ଝାଳ ପୋଛିବାକୁ ଲାଗିଲେ ।

ବଜ୍ରାହତ ଭଳି ଛିଡ଼ା ହୋଇଥିଲେ ମିଃ ଗ୍ବୋଡ଼ି ଓ ମିଟି, କିନ୍ତୁ ସେହି କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା ଭାଙ୍ଗିଦେଲେ ମିସେସ୍ ଗ୍ବୋଡ଼ି । ସେ ହଠାତ୍ ଜାବ ପକାଇ ଶ୍ୟାମଳ ଆଡ଼କୁ ଦୌଡ଼ିଗଲେ ଓ ତା' ଦେହରେ ଏକ ପ୍ରଚଣ୍ଡ ପଦାଘାତ କଲେ ।

ଶ୍ୟାମଳ ବିହ୍ୱଳ ଆଖି ବଡ଼ ବଡ଼ କରି ଛିଡ଼ାହୋଇ ପଡ଼ିଲା । ତେବେ ବେଶି ସମୟ ପାଇଁ ନୁହେଁ । ମିସେସ ମିଟିଙ୍କ ଛଡ଼ା ଆଉ ସମସ୍ତେ ମିସେସ୍ ଗ୍ବୋଡ଼ଙ୍କ ପଦାଙ୍କ ଅନୁସରଣ କରି ତାକୁ ବାଡେଇବାକୁ ଲାଗିଲେ । ମିସେସ୍ ମିଟିଙ୍କ ପାଗଳ ପ୍ରାୟ ଅଟ୍ଟହାସ୍ୟ ଭିତରେ ସେ ଚେତା ହରାଇଲା ।

ତା'ର ରକ୍ତାକ୍ତ ନିଥର ଦେହକୁ ସେମାନେ ଘୋଷାଡ଼ି ନେଇଗଲେ ପାର୍ଶ୍ୱବର୍ତ୍ତୀ ଷ୍ଟୋର କୋଠରୀ ଭିତରକୁ, ଯେଉଁଠି ସଦ୍ୟ ଶିକାରରୁ ଆଣିଥିବା ଗୋଟାଏ ଅର୍ଦ୍ଧମୃତ ରକ୍ତାକ୍ତ ବାର୍‌ହାକୁ ସେମାନେ ପକାଇ ରଖିଥିଲେ ।

କେତୋଟି ମିନଟ୍ ଭିତରେ ଏ ସବୁ ସମାଧାନ ହେଲା । ତା’ପରେ ସେମାନେ ବସିପଡ଼ି ଧସେଇ ହେବାକୁ ଲାଗିଲେ ।

ଚୌକିଦାରକୁ ଡାକିଲେ ସେଠାରୁ ବିଦାୟ ନେଇଥିବା ଲୋକଙ୍କ ଖୁବ୍ ସକାଳେ ହାଜର ହେବାକୁ ନିର୍ଦ୍ଦେଶ ଦେଲ ।

ଭିତର ପଟରୁ ଉତ୍ତମ ରୂପେ ଦ୍ୱାର ଓ ଝରକାମାନ ବନ୍ଦ କରାଗଲା । ପଛପଟର ପ୍ରାଚୀର ବଳୟିତ କିଚେନ୍ ଗାର୍ଡନରେ ନିଆଁ କୁଣ୍ଡ ପ୍ରସ୍ତୁତ କରାହେଲା । ତାକୁ ଘେରି ବସି ସେମାନେ ପିଇବାକୁ ଆରମ୍ଭ କଲେ । ଯେତେବେଳେ ନିଆଁ ଦାଉ ଦାଉ ଜଳିଲା, ସେତେବେଳେ ସେମାନେ ବାରହାକୁ ଘୋଷାରି ନେଇଆସି ସେଥିରେ ନିକ୍ଷେପ କଲେ ଓ ତା’ ଦେହରୁ ଚେକା ଚେକା ମାଂସ କାଟି ଆଣି ଖାଉ ଖାଉ ଗୀତ ବୋଲିଲେ ଓ ନାଚିଲେ ।

ରାତ ଗଭୀର ହେବାଯାଏ ।

( ତିନ )

ପୁଣି ଏକ ଝଟ୍କା । ମିସେସ୍ ମିଶ୍ର ଉଠି ବସି ଝରକା ଖୋଲି ବାହାରକୁ ଚାହିଁଲେ । ଏ ଯାଏ ଅନ୍ଧକାର ଅଛି ।

ହଠାତ୍ ସେହି ଅନ୍ଧକାର ଭିତରୁ ତାଙ୍କ ଉପରକୁ ମାଡ଼ିଆସିଲା ଏକ ଶୀତଳ ଆତଙ୍କ । କ୍ରମେ ତାଙ୍କ ସାରା ଦେହ ଭିତରେ ତାହା ସଞ୍ଚରିତ ହେଲା । ରକ୍ତରେ ଭରପୂର ହୋଇ ବଳକାତକ ସିମିତ ବିନ୍ଦୁ ବିନ୍ଦୁ ଘର୍ମ ରୂପେ ବାହାରି ଆସିଲା ।

ସେ ଅନ୍ୟମାନଙ୍କୁ ଡ଼ାକିଲେ । ଚୌକିଦାର ବୁଝିଲା, ସେମାନେ ଉଠିଲେଣି, ତେଣିକି ସେ କବାଟ ବାଡ଼େଇବାରୁ କ୍ଷାନ୍ତ ହେଲା ।

ରାଜାସାହେବ କହିଲେ, ‘‘ସୁପ୍ରଭାତ, ବନ୍ଧୁଗଣ ! ଚାହା ପ୍ରସ୍ତୁତ କରାଯାଉ, ନା କ’ଣ ? ମୁଁ ଦେଖେ, ସେ ବଜ୍ଜାତ୍ ଶ୍ୟାମଲ କ’ଣ କରୁଛି !’’

ଶ୍ୟାମଲ ବନ୍ଦୀଥିବା କୋଠରି ଆଡ଼କୁ ରାଜାସାହେବ ପାଦ ବଢ଼ାଇଲେ ।

‘‘ଯାଅ ନା !’’ ମିସେସ୍ ମିଶ୍ର, ଚିତ୍କାର କରି ରାଜାସାହେବଙ୍କୁ ଅଟକାଇଲେ । ହତଚକିତ ରାଜା କୌଣସି ପ୍ରକାରେ କହିଲେ, ‘‘କ...କ... କିନ୍ତୁ ...କା...କାହିଁକି ?’’

ମିସେସ୍ ମିଶ୍ର କହିଲେ, ‘‘ଜାଣେ ନା; କିନ୍ତୁ ଧର, କୋଠରି ଭିତରେ ଶ୍ୟାମଲ ବଦଳରେ ଯଦି ବାରହାକୁ ଦେଖ ?’’

‘‘କିନ୍ତୁ ଆମେ ତ ଗତ ରାତିରେ ବାରହାକୁ ସିଝାଇ ଖାଇଲୁ, ନୁହେଁ ?’’

‘‘ଧର ଯଦି କୋଠରି ଭିତରେ ଶ୍ୟାମଲ ବଦଳରେ ବାରହାକୁ ଦେଖ ?’’

ଦୀର୍ଘ ସମୟ ଧରି ବଜାୟ ରହିଲା ଏକ ମୃତ୍ୟୁ-ଶୀତଳ ସ୍ତବ୍ଧତା । ତା'ପରେ ଜଣେ କିଏ କହିଲେ, "କଟେଜ୍ ଗାର୍ଡେନକୁ ଯାଇ ଦେଖିବା ଚାଲ । ବାର୍‌ଦ୍ୱାର ବନ୍ଧୁ ଅଂଶ ନିଶ୍ଚେ ଏବେ ବି ସେଠାରେ ପଡ଼ିଛି !"

"ନାହିଁ, ନାହିଁ ! କଦାପି ନୁହେଁ ।" ଉଭୟ ମିସେସ୍ ମିଟି ଓ ମିସେସ୍ ଗ୍ରୀକୋର୍ଡ଼ ଚିତ୍କାର କଲେ, "ସେଠାରେ ଯାହା ପଡ଼ିଥିବ, ତାହା ଯଦି ବାର୍‌ଦ୍ୱାର ହୋଇ ନ ଥିବ ?"

ପୁଣି ମୃତ୍ୟୁ-ଶୀତଳ ସ୍ତବ୍ଧତା । ସଭିଏଁ ଦେଖୁଥିଲେ, ସଭିଏଁ ଥରୁଛନ୍ତି ।

ଦୁଇ ଘଣ୍ଟା ପରେ । ମି. ମିଟି କାର୍ ଚଳାଉଥିଲେ । କେତୋଟି ବାଲି ବସ୍ତା ଭଳି ଅନ୍ୟମାନେ ନିସ୍ତ୍ରାଣ ହୋଇ ବସିଥିଲେ ।

ରାଜାସାହେବ ହସିବାର ଚେଷ୍ଟା କରି କହିଲେ, "କେଡ଼େ ଅଦ୍ଭୁତ ତୁମର କଳ୍ପନା—ବା-ଦୁଃସ୍ୱପ୍ନ—ମିସେସ୍ ମିଟି ! ଯାହା ହେଉନା କାହିଁକି, ତମେ ଆମ ରକ୍ତ ହିମ କରିଦେଲ । ତମେ ବାସ୍ତବିକ ଅଦ୍ଭୁତ !"

ମିସେସ୍ ମିଟି ବା ଅନ୍ୟ କେହି କିଛି କହିଲେ ନାହିଁ । ତେଣୁ ରାଜା-ସାହେବ ପୁଣି କହିଲେ, "ମୁଁ ଅବଶ୍ୟ ମୋର ଓସ୍ତାଦ ଚୌକିଦାରକୁ ନିର୍ଦ୍ଦେଶ ଦେଇଛି—ଯଦି ବାସ୍ତବିକ ଆମେ ନିଶାଗ୍ରସ୍ତ ଅବସ୍ଥାରେ ଦୈବାତ୍ କିଛି ଭୁଲ୍ କରି ପକାଇଥିବା, ତେବେ କିଛି ଜଣା ନ ପଡ଼ିବା ପାଇଁ ଯଥାର୍ଥ ବ୍ୟବସ୍ଥା ସେ କରିବ; କିନ୍ତୁ ମୋର ତିଳେ ବି ସନ୍ଦେହ ନାହିଁ ଯେ ମିସେସ୍ ମିଟିଙ୍କ ଆଶଙ୍କା ଭୂତ ଭଳି ଅଳୀକ ।"

ମି: ଗ୍ରୀକୋର୍ଡ଼ ଓ ମି. ମିଟି କହିଲେ, "ସେଥିରେ କ'ଣ ବା ସନ୍ଦେହ ! ଯେ କୋଠରି ନ ଫିଟାଇବା ବା କଟେଜ୍ ଗାର୍ଡେନ ଭିତରକୁ ନ ଯିବା ଆମର ମୂଢ଼ତା ଛଡ଼ା ଆଉ କିଛି ନୁହେଁ ।"

"ଅବଶ୍ୟ ଭୂତ ଯେ ଅଳୀକ, ସେ ବିଷୟରେ ମୁଁ ନିଃସନ୍ଦେହ ନୁହେଁ । ସେ ବାଂଲୋରେ କେତୋଟି ଭୂତ ପ୍ରେତ ଅଛନ୍ତି ବୋଲି ଶୁଣାଯାଏ । ଯେମାନେ ଅନେକ କିସମର ବିଭ୍ରାଟ କରନ୍ତି । ହୁଏତ ସେଇମାନେ ଆମ କଳ୍ପନାକୁ ନେଇ ଖେଳି ଖେଳି ଆମକୁ ଗଧ ବନାଇ ଛାଡ଼ିଲେ !" ରାଜାସାହେବ କହିଲେ ।

ମିସେସ୍ ମିଟି ହଠାତ୍ କାନ୍ଦିଲେ । ମିସେସ୍ ଗ୍ରୀକୋର୍ଡ଼ ଅଟ୍ଟହାସ୍ୟ କରିବାକୁ ଲାଗିଲେ । ଅନ୍ୟମାନେ ପୁଣି ବାଲିବସ୍ତାବତ୍ ନିସ୍ତବ୍ଧ ହେଲେ ।

କାର୍‌ର ନିର୍ଘୋଷ ତଳେ ଦୁଇ ଜଣଙ୍କର କୋହ ଓ ହସ ବାରମ୍ବାର ଦଳି ଚକଟି ହୋଇ ଯାଉଥିଲା ।

